




ଆପଣଙ୍କର

# ଅମାନତ

(ଆପଣଙ୍କ ସେବାରେ)

ଓଡ଼ିଆ ଅନୁବାଦ

ଜଫର୍ ଅକବରୀ

ପ୍ରସ୍ତୁତି

ମୌଲାନା ମୁହମ୍ମଦ କଲିମ୍ ସିଦ୍ଦିକୀ

ପ୍ରକାଶକ

ଅରମୁଗାନ୍ ପବ୍ଲିକେଶନ

ଫୁଲତ୍-ମୁଜ୍‌ଫର ନଗର, (ୟୁ.ପି)

ଯୋଗାଯୋଗ - ହର୍ବାଲ ଓ ୟୁନାନି କ୍ଲିନିକ୍

ବକ୍ସିବଜାର (ପେଟ୍ରୋଲ ପମ୍ପ ସାମ୍ନା), କଟକ

ଫୋନ୍ - ୯୪୩୮୦୩୯୩୩୭

Udiya “aapki amanat aapki sewa men”

For other languages please visit phulat.blogspot.com

## ।। ଦୁଇ ପଦ ।।

ଯଦି ଆପଣଙ୍କ ସମ୍ମୁଖରେ ନିଆଁର ଟୁକୁରାଟିଏ ପଡିଥିବା କଥା ଆପଣଙ୍କୁ ଜଣା ଆଉ ସମ୍ମୁଖରୁ ଅବୋଧ ଶିଶୁଟିଏ ଠୁକଠୁକ ହୋଇ ନିଆଁ ଖଣ୍ଡ ଆଡକୁ ଚାଲିଆସୁଥିବା ଓ ତା'ର ନରମ ପାଦଟି ସେହି ନିଆଁ ଖଣ୍ଡ ଉପରେ ପଡି ଯିବାର ସମ୍ଭାବନା ନିଶ୍ଚିତ ଜାଣିଲା ପରେ ଆପଣ କଣ କରିବେ ?

ଆପଣ ତୁରନ୍ତ ସେହି ପିଲାଟିକୁ କୋଳକୁ ଉଠାଇ ନେବେ ନିଶ୍ଚୟ ! ଆଉ ମନେ ମନେ ପ୍ରସନ୍ନ ହେବେ ଏହି କାର୍ଯ୍ୟଟି ପାଇଁ ଏହିପରି କୌଣସି ମଣିଷ ଯଦି ନିଆଁରେ ପୋଡିଯାଏ ତାକୁ ଦେଖି ଆପଣ ବିଳପି ଉଠନ୍ତି ତା ପ୍ରତି ଆପଣଙ୍କ ମନରେ କରୁଣା ଜାତ ହୁଏ ।

କଣ ଆପଣ କେବେ ବି ଏକଥା ସ୍ମରଣ କରିଛନ୍ତି ଯେ ଏପରି କଣ ପାଇଁ ହୁଏ ? ଯେହେତୁ ସମସ୍ତ ମାନବ ସମାଜ କେବଳ ଜଣେ ପିତା ଓ ମାତାର ସନ୍ତାନ ହେଇଥିବାରୁ ଏପରି ହୁଏ । ସମସ୍ତଙ୍କ ଶରୀରରେ ହୃଦୟଟିଏ ଅଛି । ସେହି ମନଟିରେ ପ୍ରେମ ଅଛି, ସହାନୁଭୂତି ଅଛି ଏଣୁ ଜଣେ ଅନ୍ୟଜଣଙ୍କ ପାଇଁ ଦୁଃଖରେ ଦୁଃଖୀ ଓ ସୁଖରେ ସୁଖୀ ହୋଇଥାଏ । ଆଉ ଆବଶ୍ୟକ ସ୍ଥଳେ ସାହଯ୍ୟ କରି ପ୍ରସନ୍ନ ମଧ୍ୟ ହୁଏ । ଏଣୁ ସଚ୍ଚା ମଣିଷ ସେହି ଅଟେ ଯାହାର ହୃଦୟରେ ମାନବଜାତି ପାଇଁ ପ୍ରେମ ଉଛୁଳି ପଡେ । ଯାହାର ପ୍ରତିଟି କର୍ମ ମାନବ ଜାତିର ସେବା ପାଇଁ ଅଟେ । ସେ ମାନବ ଜାତିର ଦୁଃଖରେ ଦୁଃଖୀ ହୋଇ ତା'ର ମୋଚନ ପାଇଁ ନିଜକୁ ଖପାଇ ଦିଏ । ଏ ସଂସାରରେ ମଣିଷ ଜୀବନ ଅସ୍ଥାୟୀ । ମୃତ୍ୟୁପରେ ଯେଉଁ ଜୀବନ ମିଳିବ ତାହା ସ୍ଥାୟୀ

ଅଟେ । ନିଜର ସଚ୍ଚା ପ୍ରଭୁର ଆରାଧନା, କେବଳ ତାରି ପୂଜା କଲେ ଯାଇ ପରପାରି ଜୀବନରେ ବୈକୁଣ୍ଠ ମିଳିବ । ନଚେତ୍ ନର୍କ ଯନ୍ତ୍ରଣା ଭୋଗିବାକୁ ହେବ ଚିର କାଳ ।

ଅଧୁନା କୋଟି କୋଟି ମଣିଷ ନର୍କର ଇନ୍ଧନ ହେବାର କର୍ମରେ ଲାଗିଛନ୍ତି । ଏଭଳି ଏକ ପଥ ଧରିଛନ୍ତି ଯାହା ସେମାନଙ୍କୁ ସିଧା ନର୍କଗାମୀ କରିବ । ସେହି ଲୋକଙ୍କ ଉଦ୍ଧାର ପାଇଁ ମାନବବାଦୀ ଲୋକଙ୍କର ଢେର କର୍ତ୍ତବ୍ୟ ରହିଛି । ଏଣୁ ମଣିଷ ସମାଜ ପାଇଁ ହୃଦୟରେ ଦରଦ ରଖୁଥିବା ବ୍ୟକ୍ତି ତୁରନ୍ତ ଆଗେଇ ଆସି ନର୍କ-ଗାମୀ ହେବାକୁ ବସିଥିବା ମାନବ ଜାତିକୁ ବଂଚାଇ ନିଅନ୍ତୁ ।

ଆନନ୍ଦର କଥା ଯେ ମାନବ ଜାତିପାଇଁ ହୃଦୟରେ ସଚ୍ଚା ପ୍ରେମ ରଖୁଥିବା ତଥା ସହାନୁଭୂତିଶୀଳ ଓ ଦରଦି ମଣିଷଟି ହେଉଛନ୍ତି ମୌଲବୀ କଲିମ ସିଦ୍ଦିକୀ, ଯେକି କିଛି ସ୍ନେହଭରା । ପ୍ରେମଭରା ଫୁଲ ତୋଡା ଟିଏ ପ୍ରସ୍ତୁତ କରିଛନ୍ତି, ଯାହା ଆପଣଙ୍କୁ ଏଠାରେ ଅର୍ପଣ କରାଯାଇଛି । ସେହି ଫୁଲ ତୋଡାରେ ମାନବିକତାର ସ୍ୱଷ୍ଟ ମହକ ସ୍ଫୁରିତ ହୋଇଛି । ଜଣେ ସଚ୍ଚା ମୁସଲମାନ ଭାବରେ ସେ ନିଜର କର୍ତ୍ତବ୍ୟ ଏହା-ଦ୍ୱାରା ପୂରଣ କରିଛନ୍ତି ।

ଏହି ଦୁଇ ଶବ୍ଦ ସହ ହୃଦୟ ଟୁକୁରା "ଆପକେ ଅମାନତ ଆପକେ ସେବା ମେଁ " ଆପଣଙ୍କ ସମ୍ମୁଖରେ ତୋଳି ଧରିଲୁ ।

ୱସି ସୁଲେମାନ ନଦୱି
ସଂପାଦକ-ଉର୍ଦ୍ଦୁ ମାସିକ
ଅର୍ମୁଗାନ, ଫୁଲତ୍
ମୁଜଫର ନଗର (ୟୁ.ପି)





ମୋର ମଧ ଆତ୍ମା ଶାନ୍ତି ଲଭୁ । କାରଣ ମୁଁ ମଣିଷ ଭାବରେ ମୋର କର୍ତ୍ତବ୍ୟ ତୁଲାଇ ପାରିଛି ବୋଲି ।

ସଂସାରକୁ ଆସିବା ପରେ ମଣିଷ ପାଇଁ ଯେଉଁ ସତ୍ୟକୁ ଜାଣିବା ଚିହ୍ନିବା, ସ୍ୱୀକାର କରି ତାକୁ ପାଳନ କରିବାର ଆବଶ୍ୟକତା ରହିଛି ଆଉ ଯାହା ତା'ର ସବୁଠୁ ବଡ ଉତ୍ତରଦାୟିତ୍ୱ ଓ କର୍ତ୍ତବ୍ୟ ଅଟେ । ସେହି ପ୍ରେମବାଣୀକୁ ମୁଁ ଆପଣଙ୍କୁ ଶୁଣାଇବାକୁ ଯାଉଛି !!

॥ ପ୍ରକୃତିର ସବୁଠୁ ବଡ ସତ୍ୟ ॥

ସଂସାରର ସବୁଠୁ ବଡ ସତ୍ୟ ହେଉଛି - ଯିଏ ବିଶ୍ୱ-ବ୍ରହ୍ମାଣ୍ଡର ସର୍ଜନାକାରୀ/ ସ୍ରଷ୍ଟା, ଜନ୍ମଦାତା ଓ ଚାଳନ କର୍ତ୍ତା କେବଳ ଏକମାତ୍ର ସେହିଁ ସବୁରି ମାଲିକ /ପ୍ରଭୁ ଅଟେ । ସେ ନିଜ ଅସ୍ତିତ୍ୱରେ -ଗୁଣ-ଗାରିମାରେ ଏକକ ଓ ସ୍ୱୟଂ ସଂପୂର୍ଣ୍ଣ ଅଟେ । ଏଣୁ ସଂସାରବାସୀ (ଯଡ-ଜୀବ)ଙ୍କର ପାଳିବାରେ, ମାରିବାରେ ସେ ସର୍ବଶକ୍ତିମାନ । ସେ ନିଜ କାର୍ଯ୍ୟରେ କାହାରି ସାହାଯ୍ୟ ଲୋଡେନା । ସେ ଏଭଳି ସର୍ବବ୍ୟାପ୍ତ ଶକ୍ତି ଯେ ସମସ୍ତଙ୍କର ଗୁହାରି ଶୁଣେ-ଦେଖେ-ପୂରଣ କରେ । ଏଣୁ ସେ ଭାବଗ୍ରହୀ । ତା ଆଦେଶ ବିନା ଗଛର ପତ୍ର ମଧ ହଲେନାହିଁ । ପ୍ରତ୍ୟେକ ମଣିଷ ସେ ଯେଉଁ ବର୍ଗର ହେଉ ଏପରିକି ମୂର୍ତ୍ତି ପୂଜକ ମଧ ମୁକ୍ତ କଣ୍ଠରେ କୁହେ ଓ ବିଶ୍ୱାସ ମଧ କରେ ଯେ ଏହି ବିଶ୍ୱବ୍ରହ୍ମାଣ୍ଡର ପାଳନ କର୍ତ୍ତା, ଚାଳନକର୍ତ୍ତା, ତ୍ରାଣକର୍ତ୍ତା ଓ ସୃଷ୍ଟିକର୍ତ୍ତା ବୋଲି ଜଣେ ଅଛି । ମଣିଷ ଚେତନା ରାଜ୍ୟରେ ଏହି କଥା ବ୍ୟତୀତ ଅନ୍ୟକିଛି ନାହିଁ ।

॥ ଗୋଟିଏ ଦଲିଲ / ପ୍ରମାଣ ॥

ପବିତ୍ର କୁର୍ଆନ ଇଶ୍ୱରଙ୍କର ବାଣୀ ଅଟେ । ସଂସାରବାସୀଙ୍କୁ ନିଜର ସତ୍ୟତା (ଇଶ୍ୱରବାଣୀ ହେବା ସପକ୍ଷରେ)ର ଆହ୍ୱାନ ଦିଏ ଯେ - ଯଦି ତୁମେ ସଂଦେହ କରୁଛ ଯେ କୁର୍ଆନ ସେହି ପ୍ରଭୁର ସତ୍ୟବାଣୀ ନିହେଁ

" ଅଲ୍ଲାଃଙ୍କ ନାମରେ ଆରମ୍ଭ ଯେ ଅତ୍ୟନ୍ତ କୃପାଳୁ ଓ କରୁଣାମୟ
ମୋତେ କ୍ଷମା କରନ୍ତୁ !"

ମୋର ପ୍ରିୟ ପାଠକ ବୃନ୍ଦ ! ମୋତେ ମାଫ୍ କରନ୍ତୁ । ମୁଁ ନିଜେ ଓ ମୋର ସବୁ ମୁସଲମାନ ସଂପ୍ରଦାୟଙ୍କ ତରଫରୁ ଆପଣଙ୍କୁ କ୍ଷମା ଭିକ୍ଷା କରୁଛି କି ଶୈତାନର ପ୍ରରୋଚନାରେ ପଡି ସଂସାରର ସବୁଠୁଁ ମୂଲ୍ୟବାନ ଆପଣଙ୍କର ସଂପଦକୁ ଆପଣଙ୍କୁ ଦେଇ ନପାରି ଅନୁତପ୍ତ । ସେହି ଶୈତାନ ସାରା ସଂସାରରେ ବାସ କରୁଥିବା ମଣିଷ ମଧରେ ଘୃଣାର ଭାବ ସୃଷ୍ଟି କରି ପୃଥିବୀଟାକୁ ଏକ ରଣ ଭୂମିରେ ପରିଣତ କରିଦେଇଛି । ଏହି ଦୋଷକୁ ସ୍ୱୀକାର କରି ମୁଁ ଆଜି କଲମ ଧରୁଛି କି ଆପଣଙ୍କ ଅଧିକାର ଅର୍ପଣ କରାଯାଉ ! ଏଣୁ ମୁଁ ନିଃସ୍ୱାର୍ଥପର ଭାବରେ ପ୍ରେମ-ମାନବତାର କଥା ଆପଣଙ୍କୁ କହିବାକୁ ଯାଉଛି !

॥ ସତ୍ୟପାଠ ॥

ମୁଁ ସତ୍ୟନିଷ୍ଠ ପ୍ରଭୁ-ଭାବଗ୍ରାହୀଙ୍କୁ ସାକ୍ଷୀରଖି କହୁଛିକି ସେହି ଗୁଢ ତଥ୍ୟଟିକୁ ଆପଣଙ୍କୁ ପ୍ରଦାନ କରିବାରେ ମୋର କୌଣସି ଅଭିଳାଶ ନାହିଁ । ବରଂ ଏହି ବାର୍ତ୍ତାଟି ଆପଣଙ୍କୁ ଦେଇ ନଥିବା ହେତୁ ଦୁଃଖ-ଯନ୍ତ୍ରଣା-ଭରା ଅନେକ ରାତି ଚାହିଁଚାହିଁ କାଟିଛି । ଆପଣଙ୍କର ମନଟିଏ ଅଛି । ତାକୁ ପଚାରନ୍ତୁ । ସେ ଆପଣଙ୍କୁ ସତ କଣ ଜଣାଇ ଦେବ ।

॥ ଗୋଟିଏ ପ୍ରେମବାଣୀ ॥

ଏହି କଥାଟି କହିବାର ନୁହେଁ କିନ୍ତୁ ମୋର ଏକାନ୍ତ ଇଚ୍ଛା ଆପଣ ମୋର ଏ କଥା ଯାହା ପ୍ରେମବାଣୀ ଅଟେ ପ୍ରେମର ଦୃଷ୍ଟିରେ ଦେଖନ୍ତୁ ଓ ଜାଣିବାର ଇଚ୍ଛା ନେଇ ପଢନ୍ତୁ । କେବଳ ସେହି ପ୍ରଭୁଙ୍କ ପାଇଁ ଯିଏ ବିଶ୍ୱ -ବ୍ରହ୍ମାଣ୍ଡର ସର୍ଜନାକାରୀ-ଚାଳନ କର୍ତ୍ତା ଭାବନ୍ତୁ ।





- ତା' ହେଲେ ତା'ର ପରି ଗୋଟିଏ ଅଧାୟ ସୃଷ୍ଟିକରି ଦେଖାଅ । ଆଉ ଏହି କାର୍ଯ୍ୟ ପାଇଁ ଈଶ୍ୱରଙ୍କ ବ୍ୟତୀୟ ସଂସାରବାସୀଙ୍କୁ ନିଜ ସାହାଯ୍ୟ ପାଇଁ ନେଇନିଅ । ଯଦି ତୁମେ ସତ୍ୟବାନ ଅଟ । (ଅଧାୟ-ବକର-୨୩ ଶ୍ଳୋକ)

୧୪୦୦ ବର୍ଷ ପୂର୍ବରୁ ଆଜି ପର୍ଯ୍ୟନ୍ତ ସଂସାରବାସୀ ତଥା ବିଜ୍ଞାନର ଚରମ ଉତ୍କର୍ଷତା ସତ୍ୱେ ପବିତ୍ର କୁର୍‌ଆନର ବାଣୀକୁ ଈଶ୍ୱରଙ୍କ ବାଣୀ ନୁହେଁ ବୋଲି କେହି କହିବାକୁ ସାହାସ କରି ପାରିନାହାନ୍ତି । ବରଂ ମୁଣ୍ଡପାତି ତା'ର ସତ୍ୟତାକୁ ସମର୍ଥନ କରିଛନ୍ତି । ଏଥି ସହିତ ବଡବଡ ବିଦ୍ୱାନ ଏହି ପୁସ୍ତକକୁ ଖୁଦାଙ୍କ ମୁଖ ନିଃସୃତବାଣୀ କଥା ସ୍ୱୀକାର କରନ୍ତି । ଯଦି ଧରିତ୍ରୀ, ଆକାଶରେ ଏକାଧିକ ଈଶ୍ୱର ଥାନ୍ତେ ତାହେଲେ ଫିସାଦ ସୃଷ୍ଟି ହୋଇ ସାରନ୍ତାଣି ! ଜଣେ କୁହନ୍ତା ଏବେ ଦିନ ହେବ । ଅନ୍ୟ ଜଣେ କୁହନ୍ତା ନା ରାତି ହେବ । ଜଣେ କୁହନ୍ତା ଛଅ ମାସ ଦିନ ହେବ ଅନ୍ୟଜଣେ କୁହନ୍ତା ତିନି ମାସ ରାତି ହେବ । ସୂର୍ଯ୍ୟ ଉଦୟ ଅସ୍ତକୁ ନେଇ ମଧ ବିବାଦ ଉପୁଜନ୍ତା । ଦେବା ଦେବୀ ଇଚ୍ଛାନୁଯାୟୀ କାର୍ଯ୍ୟ କରିବାକୁ ଭାବିଲା ବେଳକୁ କରିପାରନ୍ତେ ନାହିଁ । ଜଣେ କୁହନ୍ତା ସୂର୍ଯ୍ୟ ଆଜି ପଶ୍ଚିମରୁ ଉଦୟ ହେବେ ଅନ୍ୟଜଣେ କୁହନ୍ତା ପୂର୍ବରୁ ଉଦୟ ହେବେ । ଧରାଯାଉ ସୂର୍ଯ୍ୟ ଦେବତା ନିଜ ଇଚ୍ଛାନୁଯାୟୀ ପୂର୍ବ ଦିଗରେ ଉଦୟ ହେବାକୁ ବସିଲା ବେଳକୁ ତାଙ୍କୁ ଆଦେଶ ହୁଅନ୍ତା ଏବେ ନୁହେଁ, ଏଣେ ପୃଥିବୀବାସୀ ଅନାଇ ବସନ୍ତେ ସୂର୍ଯ୍ୟ ଉଦୟକୁ । ହେଲେ ଜଣା ପଡନ୍ତା ସୂର୍ଯ୍ୟ ଦେବ ବିରକ୍ତ ହୋଇ ଆଜି ହରତାଳ କରିଦେଇଛନ୍ତି । ସେହି ପରି ବର୍ଷା --- ପବନ । କିନ୍ତୁ ମନେ ରଖିବାକୁ ହେବ ଯେ ଏମାନଙ୍କର ଶକ୍ତି ନାହିଁ ପ୍ରଭୁର ଆଦେଶକୁ ଅବଜ୍ଞା କରିବାର ।

॥ ସତ ସାକ୍ଷୀ ॥

ସତ କହିବାକୁ ଗଲେ, ସଂସାରର ପ୍ରତ୍ୟେକ (ଜୀବ ଯଡ) ସାକ୍ଷ୍ୟ ଦିଅନ୍ତି ଯେ ସଂସାର ଚାଳନା ବ୍ୟବସ୍ଥାର ମାଲିକ ଏକମାତ୍ର ସେ ଯିଏ ଏସବୁକୁ ସୃଷ୍ଟିକରିଛି । ସେ ଏକ ଓ ଅଭିନ୍ନ । ସେ ଅବିନେଶ୍ୱର ମଧ । ସେ ଯେତେବେଳେ ଯାହା ଇଛା କରେ ତାହାହିଁ ଘଟେ । ତା'ର ଅସ୍ତିତ୍ୱ ସଂପର୍କରେ କଳ୍ପନା କରିବା ଓ ତା'ର ମୂର୍ତ୍ତୀ ରୂପ ଦେବା ଉଚିତ୍ ନୁହେଁ ।

ଜୀବଶ୍ରେଷ୍ଠ ମଣିଷ (ଏକଥା ସୃଷ୍ଟିକର୍ତ୍ତା ନିଜେ ଘୋଷଣା କରିଛନ୍ତି)ର ସେବା ପାଇଁ ଚନ୍ଦ୍ରସୂର୍ଯ୍ୟ, ପାଣିପବନ, ଗ୍ରହନକ୍ଷେତ୍ର, ପାହାଡ, ପର୍ବତ, ନଦନଦୀ, ବୃକ୍ଷଲତା, ଜୀବଜନ୍ତୁ - ସରୀସୃପକୁ ସୃଷ୍ଟି କରିଛି ସୃଷ୍ଟିକର୍ତ୍ତା । ଏମାନେ ହେଲେ ମଣିଷର ବେଗାରୀ ଗୁଲାମ ଓ ସେବକ, ପରନ୍ତୁ ମଣିଷକୁ ସେ ଜନ୍ମ ଦେଇଛି କେବଳ ତା'ର ଉପାସନା କରିବାକୁ ଆଉ ପ୍ରଶଂସା କରିବାକୁ । ପୂଜାଅର୍ଚ୍ଚନା ସହ ତା'ର ଆଦେଶକୁ ଅକ୍ଷରଅକ୍ଷର ପାଳନ କରିବାକୁ । ଏଣୁ ନ୍ୟାୟତଃ ମଣିଷର ଜନ୍ମଦାତା - ପାଳନ କର୍ତ୍ତା, ମୃତ୍ୟୁ /ଜନ୍ମର ଅଧିକାରୀ, ସମସ୍ତ ଆବଶ୍ୟକତାର ପୂରଣକାରୀ, କେବଳ ଏକମାତ୍ର ସେହିଁ ପ୍ରଭୁ ଅଟେ । ଏଣୁ ଏଭଳି ଦୟାବାନ ଏକ ମାତ୍ର ପ୍ରଭୁର ଆଜ୍ଞାପାଳନ ନକରିବା ଜୀବଟି ମଣିଷ ନୁହଁ ।

॥ ଗୋଟିଏ ବଡ଼ ସତ୍ୟ ॥

ସେହି ମାଲିକ ନିଜର ସତ୍ୟ ଗ୍ରନ୍ଥ କୁର୍‌ଆନରେ ଆମ୍ଭମାନଙ୍କ ପାଇଁ ସତକଥାଟିଏ କହିଛନ୍ତି - "ପ୍ରତ୍ୟେକ ଜୀବକୁ ମୃତ୍ୟୁର ମଜା ଚାଖିବାକୁ ହେବ । ତାପରେ ତୁମକୁ ଆମ୍ଭ ନିକଟକୁ ଫେରି ଆସିବାକୁ ହେବ ।" ଶ୍ଳୋକ - ଅନକବୁତ (ବୁଢୀଆଣୀ) ୫୮ ।

ଏହି ଶ୍ଳୋକର ଦୁଇଟି ଭାଗ ଅଛି । ପ୍ରଥମତଃ ପ୍ରତ୍ୟେକ ଧର୍ମ, ସଂପ୍ରଦାୟ ଓ ବ୍ୟକ୍ତି ବିଶେଷ ଜୀବଜନ୍ତୁ ସମସ୍ତେ ମୃତ୍ୟୁକୁ ଅଟଳ ସତ୍ୟ





ବୋଲି ଜାଣନ୍ତି । ଏପରିକି ନାସ୍ତିକ ମଧ ଜନ୍ମ ମୃତ୍ୟୁ ସତ୍ୟ, ଜାଣେ । ଏଣୁ ମୂଷା ବିଲେଇ ଦେଖିଲେ ଲୁଚେ । କୁକୁର ଦୃତ ଜାନ ଦେଖି ଆଡେଇ ଯାଏ । କାରଣ ଏମାନେ ମୃତ୍ୟୁ ସତ୍ୟ ବୋଲି ବିଶ୍ୱାସ କରନ୍ତି ।

॥ ମୃତ୍ୟୁ ପରେ ॥

ଏହି ଅଧାୟର ଦ୍ୱିତୀୟ ଭାଗରେ ପବିତ୍ର କୁର୍‌ଆନ ଆମକୁ ଏକ ମହାସତ୍ୟ ଆଡକୁ ନେଇଯାଏ । ଯଦି ମଣିଷ ସେହି କଥାକୁ ନିଜ ବିଶ୍ୱାସକୁ ନେଇନିଅନ୍ତା ତାହେଲେ ସଂସାରର ବାତାବରଣ ସଂପୂର୍ଣ୍ଣ ବଦଳି ଯାଆନ୍ତା ।

- "ତୁମେ ମୃତ୍ୟୁପରେ ମୋ ନିକଟକୁ ଲେଉଟି ଆସିବ । ଆଉ ସଂସାରରେ ଯାହା କରିଥିବ, ଭଲ ଆଉ ମନ୍ଦ ତା'ର ପ୍ରତିଦାନ ନିଶ୍ଚୟ ଏଠାରେ ପାଇବ !" ମୃତ୍ୟୁପରେ ତୁମ୍ଭେ ପଚିସଢି ଯିବ ଆଉ ଥରେ ଜନ୍ମ ହେବ ନାହିଁ, ଏପରି ନୁହଁ । ଏକଥା ସତ୍ୟନୁହେଁ ଯେ ମୃତ୍ୟୁପରେ ତୁମର ଆତ୍ମା କୌଣସି ଯୋନୀରେ ପ୍ରବେଶ କରିବ । ଏହି ଦୃଷ୍ଟି କୋଣ କୌଣସି ମାନବୀୟ ବୁଦ୍ଧିର କସଟି ପଥରରେ ପରିକ୍ଷିତ ହୋଇ ନପାରେ ।

ପ୍ରଥମ କଥା ହେଲା "ଯିବା ଆସିବା"ର ଦଷ୍ଟିକୋଣ କଥା ବେଦରେ ନାହିଁ । ପୁରାଣରେ ଏହାର ଉଲ୍ଲେଖ ଅଛି । ମଣିଷର ସୁକ୍ରାଣୁରେ ଲେଖା ସନ୍ତାନଙ୍କ ଗୁଣ ପିତାରୁ ପୁତ୍ର-ପୁତ୍ରରୁ ତା'ର ପୁତ୍ର ପର୍ଯ୍ୟନ୍ତ ଯାଏ । ଏହି ଧାରଣାର ଆରମ୍ଭ ଏହି ପରିହେଲାକି ଶୈତାନ (ରାକ୍ଷଶ) ଧର୍ମର ନାଁରେ ମଣିଷକୁ ଉଚ୍ଚ ନୀଚ କଥାରେ ଫଶାଇ ଦେଲା । ଧର୍ମର ନାମରେ ସୁଦ୍ରଙ୍କ ଠୁଁ ସେବା ନେବା ଓ ତାଙ୍କୁ ନୀଚ ଭାବୁଥିବା ଧର୍ମର ଠିକାଦାରଙ୍କ ଦ୍ୱାରା ସମାଜର ନିଷ୍କେସିତ ମଣିଷ ଯେତେବେଳେ ପ୍ରଶ୍ନକଲା, ଯଦି ଆମର ଜନ୍ମ ଦାତା ଈଶ୍ୱର ଅଟନ୍ତି । ସେ ସବୁମଣିଷରୁ ଆଖି, କାନ, ନାକ ଏକାପରି ଗଢିଛନ୍ତି । ତାହେଲେ ଆପଣମାନେ ନିଜେ ନିଜକୁ

ବଡ ଆଉ  ଆମକୁ ନୀଚ କଲେ କାହିଁକି । ତୁମର ପୂର୍ବଜନ୍ମର କର୍ମ ହିଁ ତୁମକୁ ନୀଚ କରିଛି ବୋଲି ସେମାନେ ଉତ୍ତର ଦିଅନ୍ତି ସପେଂ ପାଇଁ ।

ଏହି ଧାରଣା ଅନ୍ତର୍ଗତ ସମସ୍ତ ଆତ୍ମା ପୁନର୍ବାର ଜନ୍ମ ନିଅନ୍ତି । ନିଜ କର୍ମ ହିସାବରେ ଯୋନୀ ବଦଳାଇ ଆସନ୍ତି । ଅଧିକ କୁ କର୍ମ କରିଥିବା ମଣିଷ ପଶୁର ଯୋନୀ ଧାରଣ କରନ୍ତି । ଆଉ ଅଧିକ ପାପାତ୍ମା ଗଛବୃକ୍ଷ ଯୋନୀରେ ଜନ୍ମ ନିଅନ୍ତି । ଯାହାର କର୍ମ ପୁଣ୍ୟମୟ ସେ ମୋକ୍ଷ ପ୍ରାପ୍ତ ହୁଏ ।

॥ ଯିବା ଆସିବା ବାଦର ତିନୋଟି ବିରେଧୀ ତର୍କ ॥

୧. ବୈଜ୍ଞାନିକ ମତବାଦ ଓ ବୁଦ୍ଧିଜୀବୀ କୁହନ୍ତି ଯେ ପୃଥିବୀ ପୃଷ୍ଠରେ ସର୍ବପ୍ରଥମେ ବୃକ୍ଷଲତା ଜନ୍ମ ନେଲେ ତା'ପରେ -ଜୀବଯନ୍ତୁ -ଶେଷରେ ମଣିଷ । ମଣିଷ ତ ସେତେବେଳକୁ ପୃଥିବୀରେ ଜନ୍ମ ନେଇନଥିଲା ଆଉ କୌଣସି ପାପ ମଧ କରିନଥିଲା ତେବେ ମଣିଷର ଜନ୍ମପୂର୍ବରୁ ଏଇ ଜୀବଜନ୍ତୁ - ସରୀସୃପ-ବୃକ୍ଷ ଇତ୍ୟାଦି କେଉଁ ଆତ୍ମାରୁ ଜନ୍ମ ନେଲେ ?

୨.ଦ୍ଵିତୀୟ କଥାଟି ହେଲା - ଏହି ଧାରଣକୁ ମାନି ନେଲା ପରେ ସ୍ଵୀକାର କରିବାକୁ ହେବ ଯେ, ପୃଥିବୀ ପୃଷ୍ଠରେ ବସବାସ କରୁଥିବା ଜୀବଯନ୍ତୁଙ୍କର ସଂଖ୍ୟାରେ ଲଗାତାର ହ୍ରାସ ହେବାକୁ ଲାଗିଛି । ଯେଉଁ ଆତ୍ମା ମୋକ୍ଷ ପ୍ରାପ୍ତ ହେଲା ତାଙ୍କର ସଂଖ୍ୟା ହ୍ରାସ ହେବା କଥା ଅଥଚ ଏକଥା ସତ୍ୟ ଯେ ଏହି ବିଶାଳ ପୃଥିବୀରେ ନିରନ୍ତର ମଣିଷ, ଜୀବଜନ୍ତୁ ଓ ବୃକ୍ଷର ସଂଖ୍ୟା ବଢି ଚାଲିଛି ।

୩.ତୃତୀୟ କଥା - ହେଲାଯେ ପୃଥିବୀ ପୃଷ୍ଠରେ ଜନ୍ମ ନେଉଥିବା ଓ ମୃତ୍ୟୁବରଣ କରୁଥିବା ସଂଖ୍ୟାରେ ଢେର ତାରତମ୍ୟ ଦେଖିବାକୁ ମିଳେ । ମୃତ୍ୟୁ ବରଣ କରୁଥିବା ମଣିଷର ତୁଳନାରେ ଜନ୍ମ ନେଉଥିବା ଶିଶୁଙ୍କ ସଂଖ୍ୟା ଅଧିକ । ସେହି ପରି ଜୀବଯନ୍ତୁ, ସରୀସୃପ, ପଶୁପକ୍ଷୀ ।





ବେଳେ ବେଳେ ଶୁଣାଯାଏ ଶିଶୁଟିଏ ତା'ର ପୂର୍ବ ଜନ୍ମର ଏଠିକ ବୃତ୍ତାନ୍ତ ଦେଇଚାଲିଛି । ଏଭଳି ଅକାଟ୍ୟ ପ୍ରମାଣ ମାନ୍ନ ଦିଏ ଯେ ମଣିଷ ଯେତେ ବୁଦ୍ଧିରଖି ଥିଲେବି ତାକୁ ସତ୍ୟ ବୋଲି ଗ୍ରହଣ କରିନିଏ । ଏହି କୌତହଳ ପ୍ରଦ ଘଟଣା ସହିତ କାଳପୁରୁଷର ପ୍ରଚ୍ଛନ୍ନ ହାତ ଅଛି । ସେ ମଣିଷର ଧାର୍ମିକ ବିଶ୍ଵାସକୁ ଭାଙ୍ଗିବାକୁ ଏପରି କରିଥାଏ ।

ସତ କଥାଟି ହେଲା ପ୍ରତ୍ୟେକ ମଣିଷ ମୃତ୍ୟୁବେଳେ ଓ ମରିବା ପରେ ସତ୍ୟକୁ ଜାଣିବ ଯେ ସେ ତା' ମାଲିକ ନିକଟକୁ ଯାଉଛି । ଏଠି ସେ ଯାହା କରିଥାଏ ତା' ହାହିଁ ଭୋଗେ ଭଲ କିମ୍ଵା ମନ୍ଦ ।

॥ କର୍ମର ଫଳ ମିଳିବ ॥

ଯଦି ମଣିଷ ସତକର୍ମ କରିବ  ପୁଣ୍ୟ ପଥରେ ଆଗେଇ ଯିବ ତାହେଲେ ସେ ବୈକୁଣ୍ଠ ଗାମୀ ହେବ, "ସ୍ଵର୍ଗ, ଯେଉଁଠି ସବୁ ଆରାମର ଜିନିଷ ଅଛି" ଏହା ତାପାଇଁ ପୁରସ୍କାର ସଦୃଶ ହେବ । ବୈକୁଣ୍ଠର ସୁଖ ସ୍ଵାଚ୍ଛନ୍ଦ୍ୟ ସଂପର୍କରେ ପାର୍ଥିବ ମଣିଷ କେବେହେଲେ କଳ୍ପନା କରିପାରିବ ନାହିଁ । କାରଣ ତା'ର ଚିନ୍ତା କରିବାର ଶକ୍ତି ସୀମିତ । ବୈକୁଣ୍ଠରେ ସ୍ଵର୍ଗଗାମୀଙ୍କ ପାଇଁ ସବୁଠାରୁ ସୁଖପ୍ରଦ ଉପଲବ୍ଧି ହେବ ସ୍ଵ ଚକ୍ଷୁରେ ସ୍ରଷ୍ଟାର ଦର୍ଶନ ! ସେ ଆମୋଦିତ ହେବ ନିଜ ମାଲିକର ଦର୍ଶନ ପରେ । ତାହା ଅତୁଳନୀୟ ।

ଏହାର ବ୍ୟତିରକ ଯେଉଁମାନେ ଅସତ୍‌କର୍ମରେ ଲିପ୍ତ ହେବେ, ପ୍ରଭୁଆଦେଶର ଅବଜ୍ଞା କରବେ, ଇଚ୍ଛାନୁଯାୟୀ ଜୀବନଧାରଣ କରବେ ସେମାନେ ନର୍କଗାମୀ ହୋଇ ଭୀଷଣ ଯନ୍ତ୍ରଣା ଭୋଗବେ । ତାଙ୍କୁ ପ୍ରତ୍ୟେକ ପାପର ସଜା ଓ ଦଣ୍ଡ ମିଳିବ ଆଉ ସବୁଠୁ ବଳି ଦଣ୍ଡ ମିଳିବ ଯେ ସେ ନିଜ ମାଲିକର ଦର୍ଶନ ପାଇପାରିବେ ନାହିଁ । ଆଉ ପ୍ରଭୁ ରୁଷ୍ଟ ହେବେ ।

॥ ଈଶ୍ୱରର ସମକକ୍ଷ କରାଇବା ସବୁଠୁ ବଡ ପାପ ॥

ପବିତ୍ର କୁର୍‌ଆନ ଗ୍ରନ୍ଥରେ ପ୍ରଭୁ ଆମକୁ ନିର୍ଦ୍ଦେଶ ଦେଇଛନ୍ତି ଯେ ଛୋଟ ଓ ବଡ ମହତ କାର୍ଯ୍ୟ ଅନେକ ଥିଲା ବେଳେ ପାପ କାର୍ଯ୍ୟମଧ୍ୟ ଛୋଟ ବଡ ଅଛି ଅନେକ । କିନ୍ତୁ ସବୁଠାରୁ ବଡ ପାପ ହେଉଛି, ଯାହା ଯୋଗୁଁ ଅଧିକ ଦଣ୍ଡ ଭୋଗିବାକୁ ପଡିବ, ଯେଉଁ ଦୋଷର କ୍ଷମା ନାହିଁ, ଅନନ୍ତ କାଳ ପାଇଁ ନର୍କରେ ଜଳିବାକୁ ପଡିବ, ସେଠାରେ ମୃତ୍ୟୁମଧ୍ୟ ନାହିଁ, ତାହେଲା ସର୍ବମୟ କର୍ତ୍ତା ସହିତ ଅନ୍ୟକୁ ସମକକ୍ଷ କରାଇବା, ଅନ୍ୟନିକଟରେ ମଥାନତ ହେବା, ସରଣାପନ୍ନ ହେବା, ଫଳପ୍ରାପ୍ତି ପାଇଁ ଆଶା ବାନ୍ଧିବା ତାଙ୍କ ବ୍ୟତିତ ଅନ୍ୟକୁ ପୂଜାର୍ଚ୍ଚନାର ଯୋଗ୍ୟ ଭାବିବା, ଲାଭକ୍ଷତିର ମାଲିକ ଭାବିବା-ଜନ୍ମ ମୃତ୍ୟୁର ମାଲିକ ଭାବିବା, ଯୋଡ ହସ୍ତ ହେବା... ଏସବୁ କାର୍ଯ୍ୟ ଘୋର ପାପ ତଥା ସବୁଠାରୁ ଗର୍ହିତ ଦୋଷ, ଏଭଳି ଭାବିବା ମଧ୍ୟ ମହାପାପ ଅଟେ । ଯାହାର କ୍ଷମା ନାହିଁ ।

ଉଦାହରଣ - ସୂର୍ଯ୍ୟ-ଚନ୍ଦ୍ର, ଗ୍ରହନକ୍ଷେତ୍ର, ଦେବାଦେବୀ, ପୀର ଫକୀର ଏମାନଙ୍କ ପରି ଅନେକ ଯାହାକୁ ମଣିଷ ତା'ର ମାଲିକ ବ୍ୟତିତ ପୂଜାର ଯୋଗ୍ୟ ଭାବେ ଆଉ ଯେଉଁ ରୂପରେ ହେଉ ପୂଜେ ବା ଯୋଗ୍ୟ ଭାବେ ଏହି ଆଚରଣଟି ସିର୍କ ଅଟେ । ଯାହାକୁ ପ୍ରଭୁ କେବେହେଲେ କ୍ଷମିବେ ନାହିଁ । ଏହାର ବ୍ୟତିରେକ ପ୍ରତ୍ୟେକ ପାପକୁ ଇଚ୍ଛାକଲେ ସେ କ୍ଷମିବେ । ଏକଥା ଧର୍ମ ଗ୍ରନ୍ଥମାନଙ୍କରେ ସେ ସ୍ପଷ୍ଟ କରିଦେଇଛନ୍ତି । ଆମର ବିବେକ ମଧ୍ୟ ଏହାକୁ ମନ୍ଦ କର୍ମ ବୋଲି ଭାବେ ଆଉ ଏହି କର୍ମକୁ ପାପ ବୋଲି ବିଚାରେ ।

॥ ଗୋଟିଏ ଉଦାହରଣ ॥

ଧରନ୍ତୁ ଆପଣଙ୍କ ସ୍ତ୍ରୀ ବଡ ଉଦଣ୍ଡି । କଥା କଥାକେ ଅମାନ୍ୟ କରେ । ଗାଳି ଦିଏ । କଥା ମାନେ ନାହିଁ । ଯଦି ଆପଣ ତା ଆଚରଣ





ଯୋଗୁଁ ବ୍ୟସ୍ତ ବିବ୍ରତ ହୋଇ କ୍ରୋଧରେ କୁହନ୍ତି, ଯା, ମୋ ଘରୁବାହାରି ଯା - ସେ ସଂଗେ କହିବ, କାହିଁକି ଯିବିବା । ମୁଁ ଯେ କେବଳ ତୁମରି, ତୁମରହିଁ ହୋଇ ରହିବି । ତୁମ ଦରଜାରେ ପଡି ରହି ମରିବି । ମୁହୂର୍ତ୍ତକ ପାଇଁ ତୁମଠୁ ଅଲଗା ହେବିନାହିଁ । ମୋର ତୁମ ଛଡା ଆଉ କିଏ ଅଛିକି ? - ଏକଥା ଶୁଣି ଆପଣ କି ନିଷ୍ପତ୍ତି ନେବେ କୁହନ୍ତୁ ? ସମସ୍ତ କ୍ରୋଧପରେ ମଧ୍ୟ ନିଶ୍ଚୟ ତାକୁ କ୍ଷମା କରିଦେବେ । ଅନ୍ୟପଟେ ଆପଣଙ୍କର ସ୍ତ୍ରୀ ଅତ୍ୟନ୍ତ ସେବାକାରିଣୀ, ଗୁଣବତୀ, ପ୍ରତ୍ୟେକ କଥାକୁ ପାଳନ କରେ, ବିଳମ୍ବ ରାତ୍ରି ପର୍ଯ୍ୟନ୍ତ ଆପଣଙ୍କ ଫେରିବା ବାଟକୁ ଚାହିଁ ବସେ, ଆପଣଙ୍କୁ ମନପସନ୍ଦ ଭୋଜନ ବାଢି ଦିଏ, ମିଠାମିଠା ପ୍ରେମଭରା କଥା କହି ମନ ଜିଣେ ! ଏସବୁରି ସତ୍ତ୍ୱେ ଯଦି ସେ ଗେହ୍ଲେଇ ହୋଇ ଦିନେ କୁହେ, ନାଥ ! ଯେହେତୁ ତୁମେ ଏକଲା ମୋ ମନସ୍କାମନା ପୂର୍ଣ୍ଣ କରିବାରେ ସଂପୂର୍ଣ୍ଣ ସକ୍ଷମ ନୁହଁ ମୁଁ ପଡୋଶୀକୁ ତୁମ ସହ ସ୍ୱାମୀ ଭାବରେ ଗ୍ରହଣ କରିନେଇଛି ! ଶୁଣିଲା ପରେ ଆପଣ ନିଶ୍ଚୟ କ୍ରୋଧରେ ଫାଟିପଡିବେ ! ହୁଏତ ଆପଣ ତାକୁ ହତ୍ୟାକରିବେ ନଚେତ ନିଜେ ଆତ୍ମହତ୍ୟା କରିବେ !- ଭାବନ୍ତୁ, ଏପରି କଣ ପାଇଁ ଆପଣ କରିବେ ? ଆପଣଙ୍କ ପୌରଷତ୍ୱକୁ ସେ ଚାଲେଞ୍ଜ ଦେଲା ବୋଲି ତ... ! ଆପଣ ଚରମ ପଦକ୍ଷେପ ନେଲେ । କାରଣ ଆପଣ ନିଜ ସ୍ତ୍ରୀ ପାଇଁ ଅନ୍ୟ ଜଣଙ୍କୁ ପସନ୍ଦ କରନ୍ତି ନାହିଁ ।

ଅଥଚ ପ୍ରଭୁ ଆମକୁ, ଆପଣଙ୍କୁ ସମଗ୍ର ମାନବ ଜାତିକୁ ଅପବିତ୍ର ବିନ୍ଦୁଏ ବିର୍ଜ୍ୟ ପାଣିରୁ ମଣିଷକରି ଗଢିଲା । ମାଂର ପେଟ ଅନ୍ଧାର ଘରେ ଖାଦ୍ୟର ବ୍ୟବସ୍ଥା କଲା । ବାହାରୁକୁ ଆସିଲେ ମା ଛାତିରେ ଖାଦ୍ୟ ସୃଷ୍ଟି କଲା । ପୂର୍ଣ୍ଣାଙ୍ଗ ମଣିଷଟିଏ ହୋଇ ଆପଣ ପୃଥିବୀ ପୃଷ୍ଠରେ ଚଳପ୍ରଚଳ ହେଲେ । ଚାରିପଟେ ଘେରି ରହିଥିବା ପରିବେଶରୁ ଫାଇଦା ଉଠାଇଲେ । ଏଭଳି ଦୟାବାନ ମାଲିକ ଯିଏ ଆମକୁ ପୋକମାଛି ବା ଜୀବଜନ୍ତୁ ରୂପେ

ନଗଢି ମଣିଷ ଜୀବନ ଦେଲା । ସେ କିପରି ବରଦାସ୍ତ କରିବ ଯେ, ତା'ର କେହି ସମକକ୍ଷ ହେଉ, ହେଉବା ଜୀବ ବା ଯଡ ... !! ଯାହାକୁ ମଣିଷ ନିଜର ପ୍ରଭୁଭାବେ ମାନି ପୂଜା-ଅର୍ଚ୍ଚନା କରୁଛି... !!

ବିଚାର କରନ୍ତୁ - ଜଣେ ବାରନାରୀ ନିଜର ମାନମହତ ପ୍ରତିଦାନରେ ପ୍ରତିଦିନ ଏକ ସଂଗେ ଅନେକ ଗୁଡିଏ ଗ୍ରାହକଙ୍କୁ ନିଜ ଦେହର ମାଲିକ ଭାବରେ ଗ୍ରହଣ କରିଥାଏ । ଏଣୁ ସମାଜ ତାକୁ ଘୃଣାକରେ ଓ ନୀଚ ଆଖିରେ ଦେଖେ । ସେହିପରି ଯେଉଁ ବ୍ୟକ୍ତି ତାକୁ ଛାଡି ଅନେକଙ୍କୁ ପ୍ରଭୁ ମାନୁଛି, ପ୍ରଭୁ ଦୃଷ୍ଟିରେ ସେ ବାରନାରୀ ଠାରୁ ଅଧିକ ନୀଚ ଓ ଘୃଣ୍ୟ... ।

॥ ଏକ ବିଚାର ॥

ଏଇ କଥାକୁ ନେଇ ଅନେକଙ୍କ ନାନା ରକମର ଯୁକ୍ତି ବାଢନ୍ତି- ଯେପରି, ମାଟିର ପିତୁଳା-ମାଧ୍ୟମରେ ପ୍ରଭୁଙ୍କୁ ପାଇବା । ପ୍ରଭୁ ମିଳିଗଲେ ପିତୁଳା ପୂଜାର ଆବଶ୍ୟକତା ନାହିଁ । ସାକାର ପୂଜାର ଯୁକ୍ତିଯୁକ୍ତ କାରଣ ମଧ୍ୟ ଅଛି.. ଇତ୍ୟାଦି.. ଇତ୍ୟାଦି.. !! ଆଉ କିଛି ଲୋକଙ୍କ ମତ ହେଲା- ଆମେ ତାଙ୍କୁ ଏଇଥିପାଇଁ ପୂଜା କରୁଛୁ ସେ ଆମକୁ ମାଲିକର ପଥ ଦର୍ଶାଉଛି । ଆମେ ପ୍ରକୃତ ପ୍ରଭୁଙ୍କର କଲ୍ୟାଣର ଅଧିକାରୀ ହେଉଛୁ । କିଛି ଭାଇ କୁହନ୍ତି ଆମେ କେବଳ ଧ୍ୟାନ ଜମାଇବା ପାଇଁ ମୂର୍ତ୍ତୀ ରଖିଛୁ । କଥାଟି ଅବିକଳ ହେଲା - କେହି ଜଣେ କୁଲିଠାରୁ ଟ୍ରେନ ସଂପର୍କରେ ଜାଣି ଟ୍ରେନକୁ ଛାଡି ସେହି କୁଲି ଉପରେ ସବାର ହେବା ଯାହା ପ୍ରଭୁଙ୍କୁ ଛାଡି-ପ୍ରଭୁଙ୍କ ମାର୍ଗଦର୍ଶଙ୍କୁ ପୂଜା କରିବା ସେହିପରି ।

ନିଜ ବାପକୁ ଧ୍ୟାନରେ ଆଣିବା ପାଇଁ ଯଦି ପୁଅ ଯୁକ୍ତିକରେ ମୁଁ କୁକୁର କୁ ଧ୍ୟାନ କରୁଛି ତାହେଲେ କୁହନ୍ତୁ କାହିଁ କୁକୁର କାହିଁ ବାପା !!

ଯେଉଁଠି ସଂପର୍କ ନାହିଁ କେବେ ହେଲେ ସେଠି ଧ୍ୟାନ ଜମିବ ବା କିପରି ? ଏଣୁ କୌଣସି ପ୍ରକାରରେ ମଧ୍ୟ କେବେହେଲେ ସେହି





ସର୍ବଶକ୍ତିମାନ-ପରମପିତା-କୃପାଳୁ-ଦୟାମୟ-ଭାବଗ୍ରାହୀ-ପ୍ରଭୁଙ୍କ ସହିତ କୌଣସି ଜୀବ ଜଡ... ସଜୀବ-ନର୍ଜୀବ ବସ୍ତୁ ତୁଳନୀୟ ନୁହେଁ କି ପୂଜାର ଆଦୌ ଯୋଗ୍ୟ ନୁହେଁ... ଏପରିକି ତାକୁ ଛାଡି ଅନ୍ୟର କଳ୍ପନା କରିବା ଘୋର ପାପ ଏଭଳି ପାପର କ୍ଷମା ନାହିଁ । ଏପରି କରୁଥିବା ବ୍ୟକ୍ତି ନିଶ୍ଚୟ ନର୍କଗାମୀ ହେବ; ଏହି ବକ୍ର ସତ୍ୟଟିର ଘୋଷଣା ବିଚାର୍ଯ୍ୟ.. !

॥ ସର୍ବ ଶ୍ରେଷ୍ଠ ପୁଣ୍ୟ ହେଉଛି ଇମାନ ବିଶ୍ୱାସ ॥

ଏହିପରି ସବୁଠାରୁ ବଳି ଉପକାର ଆଉ ପୁଣ୍ୟ ହେଲା ଇମାନ । ଯାହାକୁ ବିଶ୍ୱାସ କୁହାଯାଏ । ପୃଥିବୀର ସମସ୍ତ ମୁଖ୍ୟ ଧର୍ମାବଲମ୍ବୀ ଏକମତ ଯେ ସବୁକିଛି ମଲାବେଳେ ମଣିଷ ଏଠି ଛାଡିଯାଏ । କେବଳ ଇମାନ (କର୍ମଟି) ସଂଗରେ ଯାଏ । ଇମାନବାଲା ସେ ଅଟେ ଯିଏ ହକ୍‌ବାଲାକୁ ହକ୍ ପ୍ରଦାନ କରିଥାଏ । ଯିଏ ଆଉ ପ୍ରଭୁର ଆଦେଶକୁ ବିନା ବାଛି ବିଚାରରେ ପାଳନ କରିଥାଏ (ମାଗଦର୍ଶକଙ୍କ କହିବାନୁଯାୟୀ) ଯିଏ ନିଜର ଦାୟିତ୍ୱ ତୁଲାଇ ଥାଏ । ହକ୍ ମାରିଲା ବାଲାକୁ ଜାଲିମ କୁହାଯାଏ । ମଣିଷ ଉପରେ ସବୁଠାରୁ ବଡ ଅଧିକାର ପ୍ରଭୁଙ୍କର ହେଉଛି ତାଙ୍କୁହିଁ ପୂଜା କରିବା ଓ ଆଜ୍ଞାବହ ଭାବରେ ଜୀବନ ଯାପନ କରିବା, କାରଣ ସେହିଁ ତା'ର ସୃଷ୍ଟିକର୍ତ୍ତା । ପାଳକ । ତାରଣ କର୍ତ୍ତା ମଧ୍ୟ । ସେ ଧନଦିଏ । ଯଶ ମଧ୍ୟ ଦିଏ । ସନ୍ତାନ ଦିଏ । ସୁଖ ଦୁଃଖର ସେ ସାହାରା । ଏସବୁ କଥାରେ ଯିଏ ବିଶ୍ୱାସ ରଖେ ସେ **ଇମାନଦାର** ଯିଏ ନରଖେ ସେ **ବେଇମାନ** ଓ **ନାସ୍ତିକ** ଅଟେ ପ୍ରଭୁର ହକ ମାରି । ଲୋକ ଜାଣିବାକୁ ଜଣେ ଇମାନଦାର ଅଥଚ ବେଇମାନି କାର୍ଯ୍ୟରେ ଲିପ୍ତ ଥାଇ ଆରପାରିରେ ପୁରସ୍କୃତ ହେବା ଆଶା କରିବାର ଅର୍ଥ ହେଲା ଡାକୁଟିଏ ଡକେଇତି ଲବ୍ଧ ଧନ ପାଇ ଧନୀ ହେବାପରେ କୌଣସି ଲାଲାଜୀଙ୍କ ଦୋକାନକୁ ଯାଇ ଯଦି କୁହେ ଆପଣଙ୍କର ପାଇସାଟିଏ ଅଧିକା ଚାଲିଆସିଛି, ଫେରସ୍ତ ନିଅନ୍ତୁ - ଏ

ଯେପରି ଇମାନଦାରୀ କଥା - ସେହିପରି ପ୍ରଭୁଙ୍କୁ ଛାଡି ଅନ୍ୟକୁ ପୂଜିବା ତା'ଠାରୁ ବଡ ବେଇମାନି କଥା ।

ଇମାନଦାର ହେବାର ପରିଚୟ ହେଲା ମଣିଷ ନିଜର ମାଲିକକୁ ଏକ ଜାଣି ଠିକ୍ ରୂପେ ଚିହ୍ନି ତାଙ୍କର ପ୍ରତ୍ୟେକ ଆଦେଶକୁ ପାଳନ କରି (ତଦନୁଯ଼ାୟୀ) ମୃତ୍ୟୁ ପର୍ଯ୍ୟନ୍ତ କର୍ମ କରିବା । ସେ ଦେଇଥିବା ଦୁର୍ଲଭ୍ ଜୀବନ ତା'ରି ମର୍ଜି ମୁତାବକ ଲଗାଇବା ହେଉଛି ଧର୍ମ, ଉଲଂଘନ କରିବା ଅଧର୍ମ ଅଟେ ।

॥ ସଚ୍ଚା ଧର୍ମ ॥

ସତ୍‌ଧର୍ମ ଆଦ୍ୟରୁ ବିଦ୍ୟମାନ । ସେହି ଧର୍ମ ଶିକ୍ଷା ଦିଏ ଯେ ସେ ଅବିନାସୀ-ପରମବ୍ରହ୍ମ-ଏକ ଓ ଅଦ୍ୱିତୀୟ-ନିରାକାର-ନିରଞ୍ଜନ-ସର୍ବଶକ୍ତିମାନ - ସର୍ବମୟ କର୍ତ୍ତା-ସର୍ବଦା-ସର୍ବତ୍ର ବିଦ୍ୟମାନ ସେ ଆଦି-ଅନାଦି । ପବିତ୍ର ଗ୍ରନ୍ଥ କୁର୍‌ଆନ୍ ନିର୍ଘୋଷି କଣ୍ଠରେ ଘୋଷଣା କରେ ଯେ- "ଧର୍ମତ ଅଲାଃଙ୍କ- କେବଳ ଇସଲାମ ଅଟେ ।" ଇସଲାମ ବ୍ୟତିତ ଅନ୍ୟକୌଣସି ଧର୍ମ ଅଣାଗଲେ ମଧ ଗ୍ରହଣୀୟ ନୁହେଁ । (ଅଧାୟ - ଆଲେଇମରାନ-୮୫) ମଣିଷ ଦୁର୍ବଳ, ତାର ଦର୍ଶନ ଶକ୍ତି ସୀମିତ । ଘ୍ରାଣ ଶକ୍ତି-ମଧ-ସୀମିତ । ଶ୍ରବଣ ଶକ୍ତି ଚିନ୍ତନ ଶକ୍ତି ସବୁକିଛିର ଏକ ସୀମା ଅଛି କାର୍ଯ୍ୟ କରିବାକୁ । ମଣିଷ ସୀମିତ ବୁଦ୍ଧି-ବିବେକ ବଳରେ ସେହି ପ୍ରଭୁ କେଉଁ ପ୍ରକାର ଜୀବନ ପସନ୍ଦ କରେ, ତା'ର ପୂଜା କିପ୍ରକାର କରାଯିବ - ମରିବା ପରେ କଣ ହେବ । ବୈକୁଣ୍ଠ-ନର୍କଗାମୀ ହବାପାଇଁ ଯେଉଁ ପଥ ସ୍ଥିରିକୃତ, ତାହା ଜାଣିବା ସହଜ ନୁହେଁ ।





॥ ଇଶାଦୂତ ॥

ଏଣୁ ମଣିଷର ଦୁର୍ବଳତା ଯୋଗୁଁ ପ୍ରଭୁ ନିଜର କାର୍ଯ୍ୟସଂପାଦନ ପାଇଁ ଦିବ୍ୟଦ୍ରଷ୍ଟା ପୁରୁଷମାନଙ୍କୁ ବାଛି ଦୂତଦ୍ୱାରା ନିଜର ଆଦେଶ ପଠାଇଲେ । ସେମାନେ - ମଣିଷର ଜୀବନ ଯାତ୍ରାକୁ ସରଳ-ସରସ, ସୁନ୍ଦର ଓ ସହଜ କରିବାର ପଥ ଦେଖାଇଲେ ଆଉ ନିଜର ଉପାସନାର ବିଧି ଦର୍ଶାଇଲେ । ଏମାନଙ୍କୁ ଆମେ ନବି, ରସୁଲ, ପୈଗମ୍ବର ବୋଲି ଜାଣୁ । ଏହି ଅବତାର ପୁରଷମାନଙ୍କୁ ଲୋକେ ଈଶ୍ୱର ବା ପରମେଶ୍ୱର ରୂପେ ଭୂପୃଷ୍ଠରେ ଅବତରଣ ହେବା କୁହନ୍ତି । ଏହା ନିପଟ ଅନ୍ଧବିଶ୍ୱାସ, ଏହା ବଡ ପାପ ଅଟେ । ଏହି ଅନ୍ଧବିଶ୍ୱାସ ମଣିଷକୁ ମାଲିକର ପୂଜା-ଅର୍ଚ୍ଚନାରୁ ହଟାଇ ମଣିଷର ପୂଜାରେ ଲଗାଇ ଦିଏ । ପ୍ରଭୁଙ୍କ ଦ୍ୱାରା ନିର୍ବାଚିତ, ଯାହାକୁ ସ୍ୱ ବାଛି ନିର୍ଦ୍ଦିଷ୍ଟ କାର୍ଯ୍ୟ ସଂପାଦନ ପାଇଁ ପଠାଇଛନ୍ତି । ସେମାନେ ନବି ଓ ରସୁଲ ଅଂଟନ୍ତି । ଏମାନେ ପ୍ରତି ଯୁଗରେ ଆସନ୍ତି । ସେମାନେ ନିଜର କର୍ତ୍ତବ୍ୟକୁ ସୁଚାରୁରୂପେ ପାଳନ କରନ୍ତି । ସେମାନେ ମଣିଷକୁ ପ୍ରଭୁଙ୍କ ଅସ୍ତିତ୍ୱ (ଏକ ଈଶ୍ୱର) ସଂପର୍କରେ ପରିଚୟ କରାଇବା ସହିତ ଜୀବନ ଯାତ୍ରାର ନୀୟମାବଳୀ (ଅର୍ଥାତ ସରିୟତ, ଧାର୍ମିକ ନୀୟମାବଳୀ) ଅନୁଯାୟୀ କେବଳ ଏକର ପୂଜାଅର୍ଚ୍ଚନା ଏବଂ ତା'ରି ମର୍ଜୀ ମୁତାବକ ଜୀବନ ଧାରଣ କରିବାର ଢଙ୍ଗ ଶିଖାନ୍ତି ।

ଏମାନଙ୍କ ମଧ୍ୟରୁ କେହି ଜଣେବି ଏକ ଈଶ୍ୱରଙ୍କ ପୂଜାର୍ଚ୍ଚନା ବ୍ୟତୀତ ଅନ୍ୟକୁ ପ୍ରଭୁମାନି ପୂଜାର୍ଚ୍ଚନା କରିବାର ଶିକ୍ଷା ଦେଇନାହାନ୍ତି । ବରଂ ଏକକର (ଜଣକୁ) ପୂଜା କରିବାକୁ ମଣିଷ ମନରେ ବିଶ୍ୱାସ ଜନ୍ମାଇବାରେ ପ୍ରୟାସ କରିଛନ୍ତି । ଲୋକେ ତାଙ୍କ କଥାକୁ ବିଶ୍ୱାସ କରି ସତ୍ ପଥଗାମୀ ହୁଅନ୍ତୁ ।

॥ ମୂର୍ତ୍ତି ପୂଜାର ଆରମ୍ଭ ॥

ଯେହେତୁ ପୈଗମ୍ବର ଓ ତାଙ୍କର ଅନୁଗାମୀ ସମସ୍ତେ ଥିଲେ ମଣିଷ । ଏଣୁ ସେମାନଙ୍କୁ ମୃତ୍ୟୁବରଣ କରିବା କଥା, ଯାହାର ମୃତ୍ୟୁ ନାହିଁ ସେ ଖୁଦା ଅଟେ ? ନବି ବା ରସୁଲଙ୍କ ମୃତ୍ୟୁପରେ ତାଙ୍କର ଅନୁଗାମୀ

ତାଙ୍କୁ ମନେ ପକାଇ ବହୁତ କାନ୍ଦିବାକୁ ଲାଗିଲେ । ଶୈତାନକୁ ମୌକା ମିଳିଗଲା । ସେ ଯେ ମଣିଷର ବଡ ଶତ୍ରୁ । ମଣିଷର ପରୀକ୍ଷା ପାଇଁ ତାକୁ ପ୍ରଭୁ ଶକ୍ତି ଦେଇଛନ୍ତି ଏଣୁ ସେ ମଣିଷକୁ ଭୁଲ ବାଟରେ ପରିଚାଳିତ କରିବାକୁ ପ୍ରବର୍ତ୍ତାଏ । ଯିଏ ତା କଥା ନମାନେ ସେ ପ୍ରଭୁଭକ୍ତ ହୁଏ । ଯିଏ ମାନେ ଶୈତାନର ଭକ୍ତ ହୁଏ ।

ଥରେ ଶୈତାନ ମଣିଷମାନଙ୍କ ପାଖକୁ ଯାଇ କହିଲା - ତୁମ୍ଭମାନେ ତୁମ-ମହାପରୁଷଙ୍କୁ ଖୁବ ପ୍ରେମ କରୁଥିଲ । ମରିବା ପରେ ସେ ତୁମ ଆଖି ସାମନାରୁ ଦୂରେଇ ଯାଇଛନ୍ତି । ମୁଁ ଗୋଟେ ତାଙ୍କର ମୂର୍ତ୍ତି ତିଆରି କରି ଦେଉଛି । ତାକୁ ଦେଖି ତୁମେ ସନ୍ତୋଷ ଲାଭ କରିବ । ଶୈତାନ ମୂର୍ତ୍ତିଟିଏ ଗଢିଦେଲା - ସେମାନେ ଯେତେବେଳେ ଇଛା କରନ୍ତି ତାକୁ ଦର୍ଶନ କରନ୍ତି । ଧୀର ଧୀର ସେହି ମୂର୍ତ୍ତିର ପ୍ରେମ ସେମାନଙ୍କ ମନରେ ଜମିଗଲା । ଶୈତାନ ସେମାନଙ୍କୁ କହିଲା । "ଯଦି ତୁମ୍ଭମାନେ ଏହି ମୂର୍ତ୍ତିକୁ ମୁଣ୍ଡିଆ ମାରିବ ତାହେଲେ ସେହି ମୂର୍ତ୍ତି ଭିତରେ ଭଗବାନକୁ ପାଇବ ।" ମଣିଷ ମନରେ ମୂର୍ତ୍ତିର ବଡପଣ ହବାକଥା ଆରମ୍ଭରୁ ଜମିଯାଇ ଥିଲା । ଏଣୁ ସେମାନେ ମୂର୍ତ୍ତି ପାଖରେ ନତମସ୍ତକ ହେଲେ ଅଥଚ ଏକ ଈଶ୍ୱର ନିକଟରେ ତାଙ୍କର ମୁଣ୍ଡ ନୁଆଇବା ଉଚିତ୍ ଥିଲା ।

ପୃଥିବୀର ଜୀବେଶ୍ରଷ୍ଠ ମଣିଷ ପଥର ଅବା ମାଟି ପିଣ୍ଡୁଳା ସମ୍ମୁଖରେ ଧୀରେଧୀରେ ନତମସ୍ତକ, ନତଜାନୁ ହେଲା ଏଣୁ ସେ ପ୍ରଭୁ ଦୃଷ୍ଟିରେ ହୀନ ହେଲା ଆଉ ନର୍କ ଅଗ୍ନିର ଶିକାର ହେଲା । ଧର୍ମରେ ଗ୍ଲାନି । ମଣିଷର ପଶୁବତ ଜୀବନ ଧାରଣକୁ ଦେଖି, ପ୍ରଭୁ ନିଜର ଦିବ୍ୟ ପୁରୁଷ (ରସୁଲ-ନବି-ପେଗମ୍ବର)ଙ୍କୁ ପୃଥିବୀ ପୃଷ୍ଠକୁ ପଠାଇଲେ । ସେମାନେ ବିଗ୍ରହରା ଜୀବଶ୍ରେଷ୍ଠ ମଣିଷକୁ ଖୁଦାଙ୍କୁ ଛାଡି ଅନ୍ୟକୁ ପୂଜା ନକରିବାକୁ ପ୍ରବତାଇଲେ ଆଉ ମୂର୍ତ୍ତି ପୂଜାରୁ କ୍ଷାନ୍ତ କଲେ । ଅନେକ ତାଙ୍କ କଥାକୁ ମାନିଲେ, କେତେକ ଅବମାନନା କଲେ । ଯେଉଁ ମାନେ କଥାକୁ ମାନିନେଲେ ସେମାନଙ୍କ ପ୍ରତି ପ୍ରଭୁ ପ୍ରସନ୍ନ ହେଲେ । ଅବଜ୍ଞାକାରୀଙ୍କୁ ଦଣ୍ଡ ଦେଲେ ।





॥ ମହାପୁରୁଷଙ୍କର ଶିକ୍ଷା ॥

ଗୋଟିକ ପରେ ଗୋଟିଏ ନବି-ରସୁଲ-ପୈଗମ୍ବର (ମହାପୁରୁଷ) ଆବିର୍ଭାବ ହେଉଥାନ୍ତି । ଏମାନଙ୍କ ମଧ୍ୟରେ ପ୍ରତ୍ୟେକଙ୍କର ଧର୍ମର ଆଧାର ଏକ ଥିଲା । ସେମାନେ ଏକ ଈଶ୍ୱରଙ୍କୁ ମାନିବାକୁ ଆହ୍ୱାନ ଦେଲେ । କାହାରିକୁ ତାଙ୍କର ସମକକ୍ଷ ମଣିବାକୁ ବାରଣ କଲେ । ଏପରିକି ପୂଜା ପଦ୍ଧତିରେ ଅନ୍ୟମାନଙ୍କୁ ସ୍ଥାନ ଦିଅନାହିଁ । ପ୍ରଭୁଙ୍କ ଦ୍ୱାରା ପ୍ରେରିତ ସମସ୍ତ ଦିବ୍ୟ ପୁରୁଷଙ୍କୁ ସଚା ଜାଣ । ଫରିସ୍ତେ (ଏକ ପ୍ରକାର ଅଦୃଶ୍ୟ ଜୀବ ଯାହାଙ୍କ ଦ୍ୱାରା ଖୁଦା ଅନେକ କାର୍ଯ୍ୟ କରାଉଛନ୍ତି) ସେମାନେ ପ୍ରଭୁଙ୍କ ଆଦେଶକୁ ପାଳନ କରୁଛନ୍ତି । ସେମାନେ ନା ଖାଆନ୍ତି-ନା ଶୁଅନ୍ତି । ସେମାନେ ଥିବାକଥା ବିଶ୍ୱାସ କର । ଯେତେ ଧର୍ମ ଗ୍ରନ୍ଥ ପ୍ରଭୁଙ୍କ ନିର୍ଦ୍ଦେଶରେ ପୃଥିବୀ ପୃଷ୍ଠକୁ ପ୍ରେରିତ ହୋଇଛି ତାକୁ ସତ୍ୟମଣ । ମୃତ୍ୟୁପରେ ପୁନର୍ବାର ଜନ୍ମ ନେବା ପରେ ନିଜର ପାପପୁଣ୍ୟ କର୍ମଫଳ ଭୋଗିବାରେ ବିଶ୍ୱାସ ରଖ । ଆଉ ଭାଗ୍ୟ ଫଳ ସ୍ଥିରିକୃତ, ବିଶ୍ୱାସ କର । ଭଲ ଓ ମନ୍ଦ ଉଭୟ ପ୍ରଭୁଦତ୍ତ । ଜୀବନ ଧାରଣର ଶୃଙ୍ଖଳିତ ନୀୟମାବଳୀ (ସରିୟତ) ପାଳନ କର ।

ଯେତେ ଅଲ୍ଲାଙ୍କ ପ୍ରେରିତ ଦେବପୁରୁଷ ରସୁଲ-ନବି ସମସ୍ତେ ସତ୍ୟବାଦୀ ଥିଲେ । ତାଙ୍କୁ ଅର୍ପଣ କରାଯାଇଥିବା ଧାର୍ମୀକ ଗ୍ରନ୍ଥ ଥିଲା ସତ୍ୟରେ ଆଧାରିତ । ଏମାନଙ୍କୁ ସତ୍ୟଜାଣ୍ତୁ, ଆମ୍ଭେ ଏମାନଙ୍କ ମଧ୍ୟରେ ଭେଦ ଭାବ କରୁନା ବା ଫରକ ଜାଣୁନା । ସତ୍ୟର ଦଣ୍ଡି / ତରାଜୁ ଅଟେ ଯେ, ଯିଏ ଏକ ଈଶ୍ୱରର ଆରାଧନା କରିବା ପାଇଁ ଅନ୍ୟକୁ ଆମନ୍ତ୍ରଣ କରନ୍ତି, ନିଜ ପୂଜାକୁ ବାରଣ କରନ୍ତି , ଯେଉଁ ମହାପୁରୁଷ ମୂର୍ତ୍ତିପୂଜା ବା ଅନେକଶ୍ୱରକୁ ଆରାଧନା କରିବା ଶିକ୍ଷା ଦେଇଛନ୍ତି ସେମାନେ ପୈଗମ୍ବର ନୁହନ୍ତି ବା ସେମାନେ ପ୍ରଭୁଙ୍କ ବାର୍ତ୍ତାରେ ଅଦଳବଦଳ କରି ଦେଇଛନ୍ତି । ମହାପୁରୁଷ ମୁହମ୍ମଦଙ୍କ ପୂର୍ବ ପୈଗମ୍ବର ମାନଙ୍କ ଶିକ୍ଷାରେ ଅଦଳ ବଦଳ କରିଦେଇଥିବା କଥା ଜଣାପଡେ । ଗ୍ରନ୍ଥମାନଙ୍କ ମଧ୍ୟରେ ମଧ୍ୟ ଅଦଳବଦଳ କରାଯାଇଛି ।

।। ଅନ୍ତିମ ସନ୍ଦେଶକାରୀ ହଜରତ ମୁହମ୍ମଦ ।।

ଏହା ଏକ ବହୁମୂଲ୍ୟ ସତ୍ୟ ଅଟେ ଯେ - ପ୍ରତ୍ୟେକ ଅବିର୍ଭାବ ହେଇଥିବା ଦେବ ପୁରୁଷ ( ରସୁଲ-ନବି) ଙ୍କ ଦ୍ୱାରା ଓ ତାଙ୍କୁ ମିଳିଥିବା ଗ୍ରନ୍ଥରେ ଅନ୍ତିମ ରସୁଲଙ୍କ ସଂପର୍କରେ ଭବିଷ୍ୟବାଣୀ କରାଯାଇଛି ଯେ ତାଙ୍କ ଆବିର୍ଭାବ ପରେ ଓ ତାଙ୍କୁ ଚିହ୍ନି ନେଲାପରେ ସମସ୍ତ ପ୍ରାଚୀନ ଧାର୍ମିକ ନୀୟମାବଳୀ (ସରିୟତ) ପରିତ୍ୟାଗ କରି ତାଙ୍କ କଥାକୁ ମାନିନେବାକୁ ହେବ ଓ ତାଙ୍କର ଧାର୍ମିକ ବିଶ୍ୱାସକୁ  ଓ ଗ୍ରନ୍ଥକୁ ବିଶ୍ୱାସକୁ ନେଇ ପାଳନ କରିବାକୁ ପଡିବ । ଇସଲାମର ସତ୍ୟତାର ପ୍ରମାଣ (ପ୍ରାଚୀନ ଧାର୍ମିକ ବିଶ୍ୱାସ ଓ ଗ୍ରନ୍ଥମାନଙ୍କରେ) ଅନେକ କିଛି ଅଦଳବଦଳ ହେବା ସତ୍ୱେ ପରମ କାରୁଣିକ ପ୍ରଭୁ ଅନ୍ତିମ  ଧର୍ମ ଓ ଅନ୍ତିମ ପୈଗମ୍ବରଙ୍କ ସଂପର୍କରେ ପ୍ରମାଣ ମାନ ସେହି ଗ୍ରନ୍ଥ ମାନଙ୍କରେ ସୁରକ୍ଷିତ ରଖିଛନ୍ତି । ଏଣୁ କାହାରି ଆପତ୍ତି କରିବାର ପଥ ରହିଲା ନାହିଁ ଯେ ତାଙ୍କ ପାଖକୁ ଇଶ୍ୱରଙ୍କର ନିର୍ଦ୍ଦେଶ (ଶେଷ ମୁନୀ ଶ୍ରେଷ୍ଠଙ୍କ ସଂପର୍କରେ) ଆସିନାହିଁ । ବେଦରେ ନରାଂଶ, ବାଇବେଲରେ ଫାରକଲିଟ୍ , ବୌଦ୍ଧ ଗ୍ରନ୍ଥରେ ଅନ୍ତିମ ବୁଦ୍ଧ ଓ ପୁରାଣରେ କଲକୀ ଅବତାର ଭାବେ ସ୍ପଷ୍ଟ ଉଲ୍ଲେଖିତ । ଅଧିକ ଜାଣିବା ପାଇଁ ବେଦ ପ୍ରକାଶ ଉପାଧ୍ୟାୟଙ୍କର ପୁସ୍ତକ "କଳିକି ଅବତାର ଓ ମୁହମ୍ମଦ ସାହେବ ଓ ନରାଂଶ" "ଅଥ୍ୱର ଅନ୍ତିମ ଋଷି" ପଢନ୍ତୁ । ଏହି ଗ୍ରନ୍ଥ ମାନଙ୍କରେ ମୁହମ୍ମଦ ସାହେବଙ୍କ ଜନ୍ମ ସ୍ଥାନ, ଜନ୍ମତିଥି ସମେତ  ଅନେକ ସଠିକ୍ ଲକ୍ଷଣମାନ ଦର୍ଶାଯାଇଛି । ଅଧିକ ଜାଣିବା ପାଇଁ ପଣ୍ଡିତ ଦେବ ପ୍ରକାଶ ଉପାଧ୍ୟଙ୍କର କଳିକ ଅବତାର ଅଥ୍ୱର ମୁହମ୍ମଦ ସାହେବ ଓ ନରାଶଂସ ଓ ଅନ୍ତିମ ଋଷି ପଢନ୍ତୁ ।

।। ହଜରତ୍ ମୁହମ୍ମଦଙ୍କର ଜୀବନ ପରିଚୟ ।।

ପ୍ରାୟ ୧୪୫୦ ବର୍ଷ ପୂର୍ବେ ଅନ୍ତିମ ମୁନୀ ଶ୍ରେଷ୍ଠ ମୁହମ୍ମଦ (ସ୍ୱ.ସ୍ୱ) ସାଉଦୀ ଆରବର ପୃଥିବୀ ପ୍ରସିଦ୍ଧ ଧାର୍ମିକ ନଗରୀ 'ମକ୍କା'ରେ ଜନ୍ମ ଗ୍ରହଣ କରିଥିଲେ । ଜନ୍ମ ହେବାର ମାତ୍ର କେଇ ମାସ ପରେ ପିତା ଅବଦୁଲ୍ଲାହଙ୍କର ଦେହାନ୍ତ ହେବା ପରେ  ମାତା ସତ୍ୟବତୀ (ଆମିନା) ମଧ୍ୟ ଦେହ





ତ୍ୟାଗ କରିଥିଲେ । ଅଜା ଅବଦୁଲ ମତ୍ଲିବ ଓ ପରେ କକା  ଅବୁତାଲିବ ତାଙ୍କର ଭରଣ ପୋଷଣର ଦାୟିତ୍ୱ ତୁଲାଇ ଥିଲେ । ଶୈଶବ ଧାଈ ହଲିମାଙ୍କ କୋଳରେ କଟିଥିଲା । ଶୈଶବରୁ ହିଁ ମକ୍କାବାସୀଙ୍କ ଆଖିର ଥଲେ ସେ ତାରା । ବୟସ ବଢିବା ସହିତ ତାଙ୍କର ଉତ୍ତମ ସଂପର୍କ ଲୋକଙ୍କ ସହ ନିବିଡ ହେବାକୁ ଲାଗିଲା । ସେ ଏକାଧାରାରେ ଥିଲେ ପରୋପକାରୀ, ଶାନ୍ତ ଶିଷ୍ଟ, କରୁଣାମୟ, ଉଚ୍ଚ ଚରିତ୍ରବାନ, ନ୍ୟାୟୀ, ସତ୍ୟବାଦୀ, ଆମାୟିକ, ଅମାନତ ଦାର । ଏଣୁ ମକ୍କାବାସୀ ତାଙ୍କୁ ଶ୍ରଦ୍ଧାର ଚକ୍ଷୁରେ ଦେଖୁଥିଲେ । 'ମକ୍କା'ର ମଧ୍ୟସ୍ଥଳିରେ ଥିବା ଅଲ୍ଲାହଙ୍କ ପବିତ୍ର ଗୃହ (ପ୍ରାର୍ଥନା ମନ୍ଦିର) କାବାର ପୁନଃନିର୍ମାଣ କାର୍ଯ୍ୟ  ଚାଲିଥାଏ । ସେହି ଗୃହର ଗୋଟେପଟ କାନ୍ଥର କୋଣରେ ଗୋଟିଏ ପବିତ୍ର ପଥର ଖଞ୍ଜା ହୋଇଥାଏ । ପୁନଃନିର୍ମାଣ ଯୋଗୁଁ ପଥରଟିକୁ ନିଜ ସ୍ଥାନରେ ପୁନର୍ବାର ଖଞ୍ଜିବା କଥା ଉଠିବାରୁ ତା'ର ପବିତ୍ରତା ଯୋଗୁଁ ପଡାପଡାର ମୁଖିଆ ମାନଙ୍କ ମଧ୍ୟରେ ବାଦ ବିବାଦ ଆରମ୍ଭ ହୋଇଗଲା । ପ୍ରତ୍ୟେକଙ୍କର ଇଚ୍ଛାହେଲା ତାଙ୍କୁ ଖଞ୍ଜିବାର ଅଧିକାର ମିଳୁ । ଏଣୁ ପଡାପଡା ମଧ୍ୟରେ ବିବାଦ ଖଣ୍ଡଯୁଦ୍ଧର ରୂପ ନେଲା । ଜଣେ ବିଜ୍ଞ ବ୍ୟକ୍ତି ସିଦ୍ଧାନ୍ତ ଦେଲେ ଯେ ଯିଏ ପ୍ରଥମେ ଏଠାକୁ ଆସିବ ସେହି ବିଚାର କରିବ । ସେ ଦିନ ପ୍ରଥମେ ଆସିଥିବା ବ୍ୟକ୍ତି ଥିଲେ ମୁହମ୍ମଦ ସ୍ୱ :ସ୍ୱ: । ତାଙ୍କୁ ଆସୁଥିବାର ଦେଖି ସମସ୍ତେ ଏକ ସ୍ୱରରେ ଚିତ୍କାର କଲେ । ବାଃ ...ବାଃ.. ଆମ୍ଭମାନଙ୍କ ମଧ୍ୟରେ ସଚୋଟ ଓ ଇମାନଦାର ବ୍ୟକ୍ତି ଆସିଗଲେ, ଆମ୍ଭେମାନେ ପ୍ରସ୍ତୁତ ।

ସେ ଗୋଟିଏ ଚାଦର ପାରି ପଥରଟିକୁ ସେଥିରେ ଥୋଇ କହିଲେ - ପ୍ରତ୍ୟେକ ମୁଖିଆ ଚାଦର ଧରି ଟେକନ୍ତୁ । ପଥର କାନ୍ଥ ପାଖରେ ପହଞ୍ଚିଲା ପରେ ସେ ପଥରଟିକୁ ଉଠାଇ ତା'ର ପୂର୍ବ ସ୍ଥାନରେ ଥୋଇ ଦେଲେ । ଏକ ଆସନ୍ନ ଯୁଦ୍ଧ ଟଳିଗଲା ।

ଏହିପରି ଲୋକେ ପ୍ରତ୍ୟେକ କାର୍ଯ୍ୟରେ ତାଙ୍କର ସାହାଯ୍ୟ ନେଉଥିଲେ । ଯଦି ସେ ବ୍ୟବସାୟ କାରଣରୁ ଦୂରଯାତ୍ରାରେ ଚାଲିଯାଉ

ଥିଲେ ; ଲୋକେ ବ୍ୟାକୁଳ ହୋଇ ଯାଉଥିଲେ- ଲେଉଟିଲା ପରେ ତାଙ୍କୁ ଧରି ଭୋଭୋ ହୋଇ କାନ୍ଦି ଉଠୁଥିଲେ ।

ସେହି ସମୟରେ କାବା (ଅଲାଃଙ୍କ ପ୍ରାର୍ଥନା ଗୃହ)ରେ ୩୬୦ ଦେବାଦେବୀଙ୍କର ମୂର୍ତ୍ତି ସ୍ଥାପିତ ଥିଲା । ସମଗ୍ର ଆରବ ମାଟିରେ ଉଚ୍ଚନୀଚ ଘୃଣ୍ୟ ପ୍ରଥା ଥିଲା । ଅସ୍ପୃଶ୍ୟତା ମଣିଷ ମନରେ ଘର କରିଯାଇଥିଲା । ନାରୀଙ୍କ ପ୍ରତି ଅତ୍ୟାଚାର ଓ ହତ୍ୟା ନିତିଦିନିଆ ଘଟଣାରେ ଲୋକେ ଲିପ୍ତ ଥିଲେ । ସରାବ, ଜୁଆ, ସୁଧକାରବାର ଚାଲିଥିଲା ।

ଚାଳିଶ ବର୍ଷରେ ପଦାର୍ପଣ ହେଲା ମାତ୍ରେ ଅଲ୍ଲାଃ ନିଜର ପବିତ୍ର ବାଣୀ 'କୁରଆନ' କୁ ନିଜ ପ୍ରମୁଖ ଦେବଦୂତ ଜିବ୍ରାଇଲଙ୍କ ଦ୍ୱାରା ତାଙ୍କୁ ଅର୍ପଣ କଲେ । ଆଉ ଅଲାଃଙ୍କର ରସୁଲ ହେବାର ସୁ ସମ୍ବାଦ ଶୁଣାଇଲେ । ଅଲ୍ଲାଃ ମୁହମ୍ମଦ ସ୍ୱ. ସ୍ୱଙ୍କୁ ଦାୟୀତ୍ୱ ପ୍ରଦାନ କଲେ ଯେ, ତତ୍କ୍ଷଣାତ ସେ ମଣିଷ ଜାତିକୁ ଏକେଶ୍ୱର ବାଦର ବାଣୀ ଶୁଣାନ୍ତୁ ।

॥ ସତ୍ୟର ଧ୍ୱନୀ ॥

ଆପଣ ମକ୍କା ସହରର କ୍ଷୁଦ୍ର ପାହାଡ ଉପରକୁ ଉଠିଯାଇ ସେଠାକାର ପ୍ରଥାନୁଯାୟୀ ବଡ ପାଟିରେ ଡାକ ଦେଲେ । ପଡାବାସୀ ଗୁଣ୍ଡ ହୋଇଗଲେ । କାରଣ ଜଣେ ସତ୍ୟନିଷ୍ଠ ଇମାନଦାର ବ୍ୟକ୍ତିର ଥିଲା ଡାକରା । ସେ ଦିନ ତାଙ୍କ ତୁଣ୍ଡରୁ ପ୍ରଥମ ପ୍ରଶ୍ନ ଉଚ୍ଚାରିତ ହେଲା - ଯଦି ମୁଁ କୁହେ, ଏହି ପାହାଡ ସେପଟୁ ଏକ ବଡଧରଣର ଆକ୍ରମଣକାରୀ ଦଳ ଆସୁଛି ତୁମ୍ଭମାନଙ୍କୁ ଆକ୍ରମଣକରି ଶେଷ କରି ଦେବ - କଣ ତୁମେ ବିଶ୍ୱାସ କରିବ ?

ଉପସ୍ଥିତ ଜନତା ଏକ ସ୍ୱର ହୋଇ କହିଲେ, ଆପଣ ପିଲାଟି ବେଳୁ କେବେ ମିଛ କହିନାହାନ୍ତି, ଆଉ ପାହାଡ ଆରପଟକୁ ଚାହୁଁଛନ୍ତି । ଏଣୁ ଆମ୍ଭେ ବିଶ୍ୱାସ କରୁଛୁ ।

ଏ ଭରସା / ବିଶ୍ୱାସ ଭରା ଉତ୍ତର ଶୁଣି ମୁହମ୍ମଦ ସ୍ୱ:ସ୍ୱ: ଇସଲାମର ମୂଳମନ୍ତ୍ର ଉଚାରଣ କରି ମାନି ନେବାକୁ ଆହ୍ୱାନ ଦେଲେ । ଆଉ ମୂର୍ତ୍ତିପୂଜା ବନ୍ଦ ନକଲେ ନର୍କ ଯନ୍ତ୍ରଣା ଭୋଗିବାକୁ ହେବ କହି ଡରାଇଲେ ।





॥ ମନୁଷ୍ୟର ଗୋଟିଏ ଦୁର୍ବଳତା ॥

ମଣିଷର ଗୋଟିଏ ଦୁର୍ବଳତା ରହିଆସିଛି କି ସେ ପୂର୍ବ ପୁରୁଷଙ୍କର ଭୁଲକଥାକୁ ମଧ୍ୟ ଅନ୍ଧବିଶ୍ୱାସ ଯୋଗୁଁ ମାନି ଆସୁଛି । ନିଜର ବୁଦ୍ଧି-ବିବେକ ଥାଇ ମଧ୍ୟ ପୂର୍ବ ପୁରୁଷଙ୍କର ଭୁଲ କଥାକୁ ହକ୍ ମାନି କରିଚାଲିଛି । ଆଉ କେବେବି ସେହି ପଥରୁ ବିଚ୍ୟୁତ ହେଉନାହିଁ । ଏକଥା ଅନେକ ଜାତି ଧର୍ମ ବର୍ଣ୍ଣ ବିଶେଷ କରିଚାଲିଛନ୍ତି ।

॥ ବାଧା ଏବଂ ପରୀକ୍ଷା ॥

ଏହି କାରଣ ଯୋଗୁଁ ମକ୍କାବାସୀ ମହାପୁରୁଷ ମୁହମ୍ମଦ ସ୍ୱ.ସ୍ୱ ଙ୍କୁ ୪୦ବର୍ଷ ପର୍ଯ୍ୟନ୍ତ ଆଦର କରିବା, ସଚୋଟ ବୋଲି ଘୋଷଣା କରିବା ପରେ ମଧ୍ୟ ତାଙ୍କର ପରମ ଶତ୍ରୁ ପାଲଟିଗଲେ । ସେ ଲୋକଙ୍କୁ ଯେତେ ଅଧିକ ପ୍ରକୃତ ସତ୍ୟର ସାମନା ହେବାକୁ ପ୍ରବର୍ତ୍ତାଇଲେ ତାଙ୍କ ସହିତ ତା'ଠାରୁ ବହୁଅଧିକ ଶତ୍ରୁତା କରିବାକୁ ଲାଗିଲେ । ସହରର କିଛି ଲୋକ ସତ୍ୟକୁ ଗ୍ରହଣ କଲେ ଅଥଚ ତାଙ୍କୁ ଡହ ଡହ ନିଆଁରେ ଚିତକରି ସୁଆଇ ତାଙ୍କ ଛାତିରେ ପଥର ଲଦିଲେ । ଅଧିକନ୍ତୁ ତାଙ୍କ ବେକରେ ଗାମୁଛା ପକାଇ ଭିଡିଲେ, ପଥର ମାଡ ମାରି ଲହୁଲୁହାଣ କଲେ । ଆପଣ କେବଳ ଅଲ୍ଲାହ ନିକଟରେ ତାଙ୍କ ପାଇଁ ମାଗୁଣି କଲେ । କାହାରି ଉପରେ ଆକ୍ରୋଶ ରଖି ବଦଲା ନେଲେ ନାହିଁ, ସାରା ରାତ୍ରି ସେ ନିଜର ପ୍ରଭୁ ନିକଟରେ ସେମାନଙ୍କ କଲ୍ୟାଣ ପାଇଁ ମାଗୁଣୀ କରୁଥିଲେ । ଏକଦା ମକ୍କା ବାସିନ୍ଦାଙ୍କ ଆଡୁ ନିରାଶ ହୋଇ ତାଏଫ ଅଡକୁ ଯାତ୍ରାକଲେ । ସେଠାକାର ବାସିନ୍ଦା ଓ ମୁଖିଆ ତାଙ୍କୁ ଅପମାନିତ ଓ ଅନାଦାର କଲେ । ସହରର ଦୁଷ୍ଟ ଯୁବକଙ୍କୁ ତାଙ୍କୁ ଗାଳିମନ୍ଦ ଓ ମନ୍ଦ ବ୍ୟବହାର କରିବାକୁ ଲଗାଇ ଦେଲେ । ସେହି ଦୁଷ୍ଟ ଯୁବକମାନେ ତାଙ୍କ ଉପରକୁ ଟେକା ବୃଷ୍ଟିକଲେ । ଫଳରେ ତାଙ୍କ ପାଦରୁ ରକ୍ତର ଝରଣା ଛୁଟିଲା । ଭୀଷଣ ଯନ୍ତ୍ରଣା ସତ୍ୱେ ତାଙ୍କୁ ବିଶ୍ରାମ ନେବାକୁ ଦେଲେନାହିଁ । ବରଂ ବାରମ୍ବାର ତାଙ୍କ କ୍ଷତ ମାନଙ୍କୁ ପଥର ଫିଙ୍ଗି ଅଧିକ କ୍ଷତାକ୍ତ କରିଦେଲେ । ଘଉଡାଇ ଘଉଡାଇ ତାଙ୍କୁ ସହରରୁ ବାହାରକୁ ନେଇଗଲେ । ସହରରୁ ବାହାରି ଆସି ସେ ଏକ ନିରାପଦ

ସ୍ଥାନରେ ବିଶ୍ରାମ କଲେ । ମହାପୁରୁଷ ମୁହମ୍ମଦ - ସେମାନଙ୍କୁ ଅଭିଷାପ ଦେଲେନାହିଁ ବରଂ ନିଜର ପ୍ରଭୁଙ୍କ ନିକଟରେ ଅଳିକଲେ - ହେ ମୋର ପାଳନ କର୍ତ୍ତା ! ଏମାନେ ଅଜ୍ଞ, କିଛି ଜାଣନ୍ତି ନାହିଁ, ଯାଙ୍କୁ ବୁଝାଇ ଦେ !!

ପବିତ୍ର ସଂଦେଶ ଓ ଇଶ୍ୱରବାଣୀ ଶୁଣାଇବା ଯୋଗୁଁ ଏକଦା (ଅଲ୍ଲାହଙ୍କ ଇଛାରେ) ତାଙ୍କୁ ନିଜର ପ୍ରିୟ ମକ୍କା ସହର ଛାଡି ମଦିନାକୁ ଯାତ୍ରା କରିବାକୁ ପଡିଲା । ହେଲେ ମକ୍କାବାସୀ ସୈନ୍ୟଦଳ ସହ ମଦିନା ପହଞ୍ଚି ତାଙ୍କୁ ଓ ମୁଷ୍ଟିମେୟ ତାଙ୍କର କଥାରେ ବିଶ୍ୱାସ ରଖୁଥିବା ଲୋକଙ୍କୁ ନିପାତ କରିବାକୁ ବାରମ୍ବାର ଆକ୍ରମଣ କରିବାକୁ ଲାଗିଲେ ।

॥ ସତ୍ୟର ଜୟ ॥

ଯୁଗେଯୁଗେ ସତ୍ୟର ଜୟ ହୁଏ । ସବୁବେଳେ ଓ ସବୁ କ୍ଷେତ୍ରରେ । ୨୩ ବର୍ଷର ସମସ୍ତ ଝଡଝଞ୍ଜାକୁ ଅତି ସଂଯତ ଭାବରେ ସମ୍ମୁଖୀନ ହୋଇ ସେ ନିଜର ଉଚ୍ଚଆଦର୍ଶ -ମାନବ ଧର୍ମ-ସଦାଚାର ବାଣ୍ଟି ସମସ୍ତଙ୍କର ହୃଦୟ ଜୟ କରିନେଲେ ତା ନୁହେଁ ବରଂ ସମଗ୍ର ଆରବବାସୀଙ୍କୁ ଇସଲାମର ଶୀତଳ ଛାୟାତଳେ ଏକଜୁଟ କରାଇଦେଲେ । ମୂର୍ତ୍ତି ପୂଜା ବନ୍ଦ ହୋଇଗଲା, ଏକ କ୍ରାନ୍ତୀକାରୀ ଯୁଗ ଆରମ୍ଭ ହୋଇଗଲା । ଉଚ୍ଚନୀଚ ପ୍ରଥାର ଲୋପହେଲା, ସୁଧକାରବାର ବନ୍ଦ ହୋଇଗଲା । ଭେଦଭାବ ଦୂର ହୋଇଗଲା । ଭାଇଚାରାର ଏକ ସୁସ୍ଥ ବାତାବରଣ ସୃଷ୍ଟିହେଲା । ସମସ୍ତେ ଏକଶ୍ୱରବାଦୀ... ପାଲଟି ଗଲେ । ଏକ ଅଲ୍ଲାକୁ ପୂଜା କରିବା ଆରମ୍ଭ କରିଦେଲେ ।

॥ ଅନ୍ତିମ ବାର୍ତ୍ତା ॥

ନିଜର ଅନ୍ତିମଯାତ୍ରା ପୂର୍ବରୁ ଶେଷ ହଜ୍ ପାଳନ କାଳରେ ମହାପୁରୁଷ ମୁହମ୍ମଦ ସ୍.ସ୍ ଏକ ଲକ୍ଷ ପଚିଶ ହଜାର ଲୋକଙ୍କୁ ଗୁଣ୍ଡ କରାଇ ଶେଷ ବାର୍ତ୍ତା ପ୍ରଦାନ କରିବା ଅବସରରେ ଯାହା କହି ଥିଲେ ସେଥିରୁ ମାତ୍ର କେତୋଟି - ମୃତ୍ୟୁପରେ ବିଚାର ଦିନ ତୁମ୍ଭମାନଙ୍କୁ ନିଜନିଜ କର୍ମ ବିଷୟରେ ପ୍ରଶ୍ନ ହେବ । ଏଥି ସହିତ ପ୍ରଭୁ ତୁମକୁ ମୋ ସଂପର୍କରେ ପ୍ରଶ୍ନ କରିବେକି ମୁଁ ତୁମ୍ଭମାନଙ୍କୁ ସେ ଦେଇଥିବା ଧର୍ମ ସତ୍ୟତା ସଠିକ୍





ଭାବରେ ପହଞ୍ଚାଇ ଥିଲି ନା ନାହିଁ । ସେତେବେଳେ ତୁମେ ମୋ ସଂପର୍କରେ କଣ କହିବ ? ଉପସ୍ଥିତ ଜନତା ଏକ ସ୍ୱର ହୋଇ କହିଲେ, "ଆପଣ ନିସନ୍ଦେହରେ ପହଞ୍ଚାଇଛନ୍ତି । ସେ ଆକାଶ ଆଡକୁ ଅଙ୍ଗୁଳି ନିର୍ଦ୍ଦେଶକରି କହିଲେ, ହେ ଅଲ୍ଲାଃ, ଆପଣ ସାକ୍ଷୀ ରୁହନ୍ତୁ , ସାକ୍ଷୀ ରୁହନ୍ତୁ, ସାକ୍ଷୀ ରୁହନ୍ତୁ ।" ତା'ପରେ ନିର୍ଦ୍ଦେଶ ଦେଲେ "ଏହି ସତ୍ୟ ଧର୍ମକୁ ସେମାନଙ୍କ ପର୍ଯ୍ୟନ୍ତ ପହଞ୍ଚାଅ ଯାହାଙ୍କୁ ପହଞ୍ଚା ଯାଇପାରିନାହିଁ ।"

ଏକଥା ମଧ୍ୟ ଘୋଷଣା କଲେ ଯେ ମୁଁ ଅଲ୍ଲାକଙ୍କର ରସୁଲ (ପୈଗମ୍ବର) ଅଟେ । ମୋ ପରେ ଆଉ କେହି ରସୁଲ ଆସିବେ ନାହିଁ । ମୁଁ ହିଁ ଅନ୍ତିମ ରସୁଲ (କଳିକି ଅବତାର ଅଟେ) ଯାହାର ତୁମେ ପ୍ରତୀକ୍ଷା କରୁଥିଲ । ଏବେ ତୁମ୍ଭେମାନେ ସବୁକିଛି ଜାଣି ସାରିଲଣି ।-

ପବିତ୍ର କୁରାଆନ ଘୋଷଣା କରେ - "ମଣିଷଙ୍କୁ ଆମ୍ଭେ ଗ୍ରନ୍ଥ ପ୍ରଦାନ କରିଛୁ । ସେ ଯାଙ୍କୁ (ମହମ୍ମଦ ସ୍.ସ୍) ଚିହ୍ନନ୍ତି ↑ ଯେପରି ନିଜ ପୁତ୍ରଙ୍କୁ । ହଁ ସେମାନଙ୍କ ମଧ୍ୟରେ ନିସନ୍ଦେହରେ ଗୋଟିଏ ଦଳ ସତ୍ କଥାଟିକୁ ଲୁଚାଇଛନ୍ତି ।

(ସୁରା ଅଲବକ୍ର -୧୪୭)

॥ ପ୍ରତ୍ୟେକ ମଣିଷର କର୍ତ୍ତବ୍ୟ ॥

ଏଣୁ ପ୍ରଳୟ ପର୍ଯ୍ୟନ୍ତ ଜନ୍ମ ନେବାକୁ ଥିବା ପ୍ରତ୍ୟେକ ମଣିଷର ଧାର୍ମିକ ଓ ମାନବିକ ଦାୟିତ୍ୱ ହେଲା ଯେ ସେ ଏକ ମାଲିକ (ପ୍ରଭୁ)କୁ ପୂଜା କରୁ । ତା'ର ସମକକ୍ଷ -ସମତୁଲ୍ୟ-କାହାରିକୁ ନ ଜାଣୁ ବା ମାନୁ ଓ ଅନ୍ତିମ ପୈଗମ୍ବର ମୁହମ୍ମଦଙ୍କୁ ସଚ୍ଚା ମାନୁ । ତାଙ୍କ ଦ୍ୱାରା ପ୍ରଚାରିତ ଧର୍ମବାଣୀକୁ (ଧର୍ମ) ଓ ଜୀବନ ଯାପନର ନୀୟମାବଳୀକୁ ପାଳନ କରୁ । ଇସଲାମ ଧର୍ମରେ ଏହି କଥାକୁ 'ଇମାନ' ବା ବିଶ୍ୱାସ କୁହାଯାଏ । ଏହାର ବ୍ୟତିରେକ ମୃତ୍ୟୁ ପରେ - ଅନନ୍ତ କାଳପାଇଁ ନର୍କରେ ଜଳିବାକୁ ହେବ ।

॥ ଦୁଇଟି ପ୍ରଶ୍ନ ॥

ଏଠାରେ ଆପଣଙ୍କ ମନରେ ଦୁଇଟି ପ୍ରଶ୍ନ ଆସିପାରେ । ମରିବା ପରେ ସ୍ୱର୍ଗ ବା ନର୍କରେ ଯିବା ଦେଖାତ ଯାଉନି, ଏହାକୁ ମାନିବା କଣ ପାଇଁ ?

ଆମେ ଜାଣୁ ପ୍ରତ୍ୟେକ ପ୍ରାଚୀନ ଗ୍ରନ୍ଥରେ ସ୍ୱର୍ଗ-ନର୍କ ସଂପର୍କରେ ବର୍ଣ୍ଣନା ଅଛି । ଏଥିରୁ ପ୍ରମାଣିତ ହେଉଛି ପ୍ରତ୍ୟେକ ଧର୍ମ ଏହାକୁ ମାନେ ବିଶ୍ୱାସ କରେ ।

ଗୋଟିଏ ଉଦାହରଣ । ପିଲାଟି ମା ପେଟରେ ଥିବା ବେଳେ ଯଦି ତାକୁ କୁହାଯାଏ ତୁ ଗର୍ଭରୁ ପଦାକୁ ବାହାରିଲା ପରେ ଦୁଧ ପିଇବୁ, କାନ୍ଦିବୁ, ସେଠାରେ ଅନେକ ଜିନିଷ ଦେଖିବୁ, ଚନ୍ଦ୍ର, ସୂର୍ଯ୍ୟ ଦେଖିବୁ । ପିଲାଟି ବିଶ୍ୱାସ ଯିବ ନାହିଁ । କିନ୍ତୁ ପଦାକୁ ଆସିଲେ ସବୁ କିଛି ଦେଖିବ । ଏହି ପରି ସାରା ସଂସାର ଏକ ଗର୍ଭ ଅବସ୍ଥା - ମରିବା ପରେ ପରପାରିର ସଂସାରରେ ପହଞ୍ଚି ଆଖି ଖୋଲିବ'ତ ସବୁ କିଛି ଦେଖିପାରିବ ।

(ସ୍ୱର୍ଗ-ନର୍କ ସଂପର୍କରେ ଆମକୁ ଶୁଣାଇଥିବା ବ୍ୟକ୍ତିଟି ସତ୍ୟବାନ ପୁରୁଷ । ତାଙ୍କର ପ୍ରଧାନ ଶତ୍ରୁ ମଧ୍ୟ ତାଙ୍କୁ ମିଥ୍ୟାବାଦୀ ବୋଲି କେବେହେଲେ କହିନାହାନ୍ତି । )

॥ ଦ୍ୱିତୀୟ ପ୍ରଶ୍ନ ॥

ଦ୍ୱିତୀୟ ପ୍ରଶ୍ନଟି ଆପଣଙ୍କ ମନରେ ଖଟ୍‌କା ସୃଷ୍ଟି କରିବ । ଯଦି ପ୍ରତ୍ୟେକ ଧର୍ମ ସଚ୍ଚା ଅଟେ । ତାହେଲେ ଇସଲାମ ଧର୍ମ ଗ୍ରହଣ କରିବାର ଆବଶ୍ୟକତା ରହିଲା କେଉଁଠି ? ଆମ ଦେଶରେ ସଂସଦ ଅଛି । ଗୋଟିଏ ସଂମ୍ବିଧାନ ମଧ୍ୟ ଅଛି । ଏଠାରେ ଯେତେ ପ୍ରଧାନ ମନ୍ତ୍ରୀ ଆସିଲେ ସେମାନେ ବାସ୍ତବିକ ଭାରତ ବର୍ଷର ପ୍ରଧାନମନ୍ତ୍ରୀ ଥିଲେ । ପଣ୍ଡିତ ଜବାହାରଲାଲ ନେହ୍ରୁ, ଶାସ୍ତ୍ରିଜୀ, ଇନ୍ଦିରାଗାନ୍ଧୀ, ରାଜିବଗାନ୍ଧୀ, ଭିପିସିଂ, ଅଟଳବିହାରି ବାଜପେଇ ଇତ୍ୟାଦି । ଦେଶର ଆବଶ୍ୟକତା ଓ ସମୟର ଆହ୍ୱାନକୁ ଆଖିରେ ରଖି ଅଧ୍ୟାଦେଶମାନ ଜାରି କଲେ ସେସବୁ ଭାରତର ଶାସନ ପାଇଁ ଆବଶ୍ୟକ ଥିଲା । ସେମାନେ ଯେତେବେଳେ ସଂମ୍ବିଧାନ ସଂଶୋଧନ କରନ୍ତି, ନାଗରିକଙ୍କୁ ତାହା ପାଳନ କରିବା ଅନିର୍ବାର୍ଜ୍ୟ ହୋଇପଡେ । ବର୍ତ୍ତମାନର ପ୍ରଧାନମନ୍ତ୍ରୀ ଓ ତାଙ୍କର ସଂସଦ ଓ ସରକାର ଯେଉଁ ଆଇନ ସଂଶୋଧନ କରିବେ, ପୁରୁଣା କାନୁନ ଆପେ ଆପେ ରଦ ହୋଇଯିବ । ଦେଶର ନାଗରିକଙ୍କୁ ନୂଆ କାନୁନ ମାନିବାକୁ ହେବ । ଯଦି କୌଣସି





ନାଗରିକ ଦାବିକଲା ଯେ ଇନ୍ଦିରା ଗାନ୍ଧୀ ଅସଲି ପ୍ରଧାନ ମନ୍ତ୍ରୀ ଥିଲେ ଏଣୁ ମୁଁ ତାଙ୍କର କଥା ମାନିବି, ଏବେର ପ୍ରଧାନ ମନ୍ତ୍ରୀ ଆଣିଥିବା ନିୟମକୁ ମାନିବି ନାହିଁ ତାହାଲେ ବ୍ୟକ୍ତିଟି ନିଶ୍ଚୟ ଦେଶ ଦ୍ରୋହରେ ଦଣ୍ଡିତ ହେବ । ଏହିପରି ସବୁ ଧର୍ମ ଓ ଧାର୍ମିକ ଗ୍ରନ୍ଥ ନିଜ ନିଜ ସମୟର ସତ୍ୟର ବାର୍ତ୍ତା ଶୁଣାଇଛନ୍ତି । ଶିକ୍ଷା ମଧ୍ୟ ଦେଇଛନ୍ତି । ସମସ୍ତ ପୂର୍ବ ରସୁଲ (ମହାପୁରୁଷ) ଓ ତାଙ୍କର ପୁସ୍ତକଙ୍କୁ ସତ୍ୟ ଜାଣିବା ସହିତ ଅନ୍ତିମ ରସୁଲ (ମହାପୁରୁଷ) ହଜ୍‌ରତ ମୁହମ୍ମଦ ସ୍ୱ.ସ୍ୱଙ୍କ ଉପରେ ଇମାନ ଆଣିବା ପ୍ରତ୍ୟେକ ମଣିଷ ପାଇଁ ଅନିର୍ବାଯ୍ୟ ।

॥ ସତ୍ୟ ଧର୍ମ କେବଳ ଗୋଟିଏ ॥

ଏକଥା କହିବାର କୌଣସି ଯଥାର୍ଥତା ନାହିଁ ଯେ, ସବୁଧର୍ମ ଈଶ୍ୱରଙ୍କ ଆଡକୁ ଯାଇଛି । ଆଉ ପଥ ଅଲଗା ହେଲେ ମଧ୍ୟ ଲକ୍ଷ୍ୟ ସ୍ଥଳି ଏକ । ମନେରଖିବାକୁ ହେବ ଯେ ସତ୍ୟ କେବଳ ଗୋଟିଏ । ଅସତ୍ୟ ଅନେକ ହୋଇପାରେ । ଜ୍ୟୋତି ଏକ । ଅନ୍ଧାର ଅନେକ ହୋଇପାରେ । ସତ୍ୟ ଧର୍ମ ହେଉଛି ଗୋଟିଏ । ତାହା ସନାତନ, ଆଦ୍ୟରୁ ଏକ ରହିଛି । ଧର୍ମ କେବେବି ବଦଳେ ନାହିଁ । କେବଳ ସରିୟତ (ଜୀବନ ଯାପନ ନୀୟମାବଳୀ) ସମୟାନୁଯାୟୀ ବଦଳିଥାଏ କେବଳ ପ୍ରଭୁର ଆଦେଶରେ । ଯଦି ମାନବ ଜାତି ଏକ ଅଭିନ୍ନ, ସେମାନଙ୍କର ପ୍ରଭୁ ଏକ ତା' ହେଲେ ରାସ୍ତା ମଧ୍ୟ ଗୋଟିଏ । ଧର୍ମ ମଧ୍ୟ ଗୋଟିଏ । କୁର୍‌ଆନ କୁହେ ଧର୍ମତ ଅଲ୍ଲାଃଙ୍କର କେବଳ, ଇସଲାମ (ଧର୍ମ) ଅଟେ ।

॥ ଆଉ ଏକ ପ୍ରଶ୍ନ ॥

ଏଭଳି ପ୍ରଶ୍ନଟି ମଧ୍ୟ ହୋଇପାରେ ଯେ ମହାପୁରୁଷ ମୁହମ୍ମଦ ସ୍ୱ.ସ୍ୱ ଅଲ୍ଲାଃଙ୍କର ସଚ୍ଚା ରସୁଲ ଅଟନ୍ତି କିପରି ? କିଛି ପ୍ରମାଣ ଅଛି ? ଉତ୍ତର ଅତି ସରଳ । ପବିତ୍ର କୁରଆନ ଅଲ୍ଲାଃଙ୍କ ମୁଖ ନିସୃତ ବାଣୀ ଅଟେ । ସଂସାରବାସୀଙ୍କୁ ନିଜର ସତ୍ୟତା ସଂପର୍କରେ ସେ ଆହ୍ୱାନ ଦିଏ । ଅଦ୍ୟାବଧି ତାହାକୁ ଖଣ୍ଡନ କରାଯାଇନାହିଁ । ମହାପୁରୁଷ ମୁହମ୍ମଦ ଅନ୍ତିମ ପୈଗମ୍ବର ବୋଲି ଘୋଷଣା କରେ । ଦ୍ୱିତୀୟ କଥାଟି ହେଲା, ମହାପୁରୁଷ

ମୁହମ୍ମଦଙ୍କର ଜୀବନାଦର୍ଶ ସଂସାରବାସୀଙ୍କ ସମ୍ମୁଖରେ ଜାଜ୍ବଲ୍ୟମାନ ଅବସ୍ଥାରେ ଉଦ୍ଭାଷିତ । ତାଙ୍କର ଜନ୍ମ - ଇତିହାସର ଆଲୋକର ଘଟିଛି । ତାଙ୍କର ପରମ ଶତ୍ରୁ ତଥା - ଇସଲାମ ବିରୋଧୀ ଶତ୍ରୁ ଐତିହାସିକ ମାନେ ମଧ୍ୟ କେବେ ତାଙ୍କ ଉଚ୍ଚ ଆଦର୍ଶ ଜୀବନ ଉପରେ ଅଙ୍ଗୁଳି ନିର୍ଦ୍ଦେଶ କରିନାହାନ୍ତି ।

ଅଧିକନ୍ତୁ ମକ୍କାବାସୀ ତଥା ହେକାଜ୍ (ଆରବଭୂମି) ବାସୀ ମୁକ୍ତ କଣ୍ଠରେ ତାଙ୍କୁ ସତ୍ୟବାନ ବୋଲି ଘୋଷଣା କରୁଥିଲେ ଅଥଚ ତାଙ୍କର ପ୍ରଧାନ ଧାର୍ମିକ ଶତ୍ରୁ ଥିଲେ । ଶୈଶବରୁ ମୃତ୍ୟୁ ପର୍ଯ୍ୟନ୍ତ ସତ୍ୟ ବ୍ୟତୀତ ମିଥ୍ୟା ତାଙ୍କ ପାଖ ପଶିନାହିଁ । ଏଭଳି ସତ୍ୟବାନ ପୁରୁଷ ଧର୍ମ ନାମରେ ଓ ସଂସାର କର୍ତ୍ତାଙ୍କ ସଂପର୍କରେ ମିଛ କୁହନ୍ତି କିପରି ?

॥ ପଣ୍ଡିତ ଶ୍ରୀ ରାମ ଶର୍ମାଙ୍କର ବିଚାର ॥

ପଣ୍ଡିତ ରାମ ଶର୍ମା ନିଜ ପୁସ୍ତକରେ ଲେଖିଛନ୍ତି ଯେ ଯିଏ ଇସଲାମ ଧର୍ମ ଗ୍ରହଣ ନକରେ ଆଉ ମହାପୁରୁଷ ମୁହମ୍ମଦ ସ୍ୱ ସ୍ୱ ଙ୍କୁ ଓ ତାଙ୍କ ଧର୍ମକୁ ନମାନେ ସେ ହିନ୍ଦୁ ମଧ୍ୟ ନୁହେଁ । ଏଇଥି ପାଇଁ ଯେ ହିନ୍ଦୁଧର୍ମର ଗ୍ରନ୍ଥ ମାନଙ୍କରେ ମୁହମ୍ମଦଙ୍କ (କଲକି ଅବତାର) ଆବିର୍ଭାବ ପରେ ତାଙ୍କୁ ଓ ତାଙ୍କ ଧାର୍ମିକ ବିଶ୍ୱାସକୁ ମାନି ନେବାକୁ ହେବ । ଯେଉଁ ହିନ୍ଦୁ ନିଜ ଧର୍ମଗ୍ରନ୍ଥରେ ବିଶ୍ୱାସ ରଖେ ତାକୁ ନମାନିଲେ ମୃତ୍ୟୁ ପର ଜୀବନରେ ନର୍କ ଯନ୍ତ୍ରଣା ଭୋଗିବ ଆଉ ପ୍ରଭୁ ଦର୍ଶନରୁ ବଞ୍ଚିତ ହେବ ଆଉ ତାଙ୍କର କ୍ରୋଧର ଶୀକାର ହେବ । ମୃତ୍ୟୁପରେ ନର୍କଗାମୀ ହେବ ।

॥ ଧାର୍ମିକ ବିଶ୍ୱାସର ଆବଶ୍ୟକତା ॥

ମୃତ୍ୟୁପର ଜୀବନ ଯାହାକୁ ପରକାଳ ବୋଲି ଆମେ ଜାଣୁ ତା'ର ବିଶ୍ୱାସ ସହିତ ସଂସାରରେ ମଧ୍ୟ ଇସଲାମର (ବିଶ୍ୱାସ) ଆବଶ୍ୟକତା ରହିଛି ଯେ ମଣିଷ ଏକ ଈଶ୍ୱରକୁ ପୂଜା କରୁ । ଯିଏ ତା'ର ଦ୍ୱାର ଛାଡି ଅନ୍ୟ ନିକଟରେ ମୁଣ୍ଡ ନୁଆଏଁ ବା ହାତପାତେ, ସେତ କୁକୁର ଠାରୁ ହୀନ । କୁକୁରତ ନିଜ ଖାଉନ୍ଦ ଦ୍ୱାରଦେଶରେ ପଡିଥାଏ । ଆଉ ତାଠିଁ ଆଶା ରଖିଥାଏ । ଜ୍ଞାନ ରଖିଥିବା ମଣିଷ ସେ ଗୋଟିଏ ମାଲିକକୁ ନମାଗି, ସହସହ ମାଲିକ ନିକଟରେ ହାତ ପାତୁଛି କିପରି ?





ମଣିଷର ସବୁଠାରୁ ବଡ ଆବଶ୍ୟକତା ହେଉଛି ନର୍କ ପୁରୀରୁ ରକ୍ଷାପାଇବା !! ଇମାନ (ବିଶ୍ୱାସ) ପରପାରି ଜୀବନ ପାଇଁ ବଡଦରକାର । ଯେଉଁଠୁ ମଣିଷ ଫେରି ଆସିପାରେନା, ମରିବାକୁ ଇଚ୍ଛା କରି ମରିପାରେନା, ଅନୁତାପ କଲେ ମଧ୍ୟ କିଛି ଫଳ ମିଳେ ନାହିଁ । ଯଦି ମଣିଷ ନିଜର ଧାର୍ମିକ ବିଶ୍ୱାସ ସଠିକ୍ ଭାବରେ ନବୁଝି - ପାଳନ ନକରି, ସଂସାରରୁ, ବିନା ବିଶ୍ୱାସରେ ଚାଲିଗଲା ତାହେଲେ ଅନନ୍ତକାଳ ପାଇଁ ନର୍କରେ ଜଳିବ । ଯଦି ସଂସାରର ଅଗ୍ନି ସ୍ଫୁଲିଙ୍ଗଟିଏ ଆମ ଦେହରେ ଲାଗି ଯାଏ ଆମେ ବିଳପି ଉଠୁ । ତାହାଲେ ନର୍କ ଅଗ୍ନି କିପରି ସହିହେବ । ପୃଥିବୀର ଅଗ୍ନି ଠାରୁ ନର୍କ ଅଗ୍ନି ୭୦ ଗୁଣ ଅଧିକ ହେବ ବୋଲି ଜଣାପଡେ !

॥ ପ୍ରିୟ ପାଠକେ ॥

ମୋର ପ୍ରିୟ ପାଠକେ ! ମୃତ୍ୟୁର ସମୟ କାହାକୁ ଜଣାନାହିଁ । କେଉଁ ମୁହୂର୍ତ୍ତରେ ହାବୁଡି ଯିବ କହି ହେବନାହିଁ । ଯେଉଁ ପବନ ଭିତରକୁ ଗଲା ପଦାକୁ ଆସିବାର ମଧ୍ୟ ସମ୍ଭାବନା ନାହିଁ ; ଯେଉଁ ପବନ ପଦାରେ ଅଛି ଭିତରକୁ ଯିବାର ମଧ୍ୟ ଆଶା ନାହିଁ । ଏହିଭଳି ପରିସ୍ଥିତିରେ ଆମେ ଅଛୁ, ଏଣୁ ମୃତ୍ୟୁ ଆସିବା ପୂର୍ବରୁ ତା'ର ପ୍ରସ୍ତୁତି ଆବଶ୍ୟକ । ଏଣୁ ମୃତ୍ୟୁ ପୂର୍ବରୁ ମଣିଷର ମୃତ୍ୟୁର ପ୍ରସ୍ତୁତି ଆବଶ୍ୟକ । ଇମାନ ଛଡା ଜୀବନ ନାହିଁ । ଇହ ଓ ପରକାଳରେ ତା'ର ଉତ୍ତର ପ୍ରସ୍ତୁତ କରିବାର ସମୟ ଏଇଠି । ମୋତେ ବି ଭୟ ଲାଗୁଛି । ଆରପାରିରେ ହିସାବ ଦିନ ଆପଣଙ୍କ ନିକଟକୁ କେହି ବାର୍ତ୍ତା ନେଇ ଆସିନଥିବା କଥା କହିନ ଦିଅନ୍ତି ।

ମୁଁ ଆଶା ରଖିବି ଏହି ସତ୍ୟବାର୍ତ୍ତା ଆପଣଙ୍କ ହୃଦୟରେ ନିଶ୍ଚୟ ବିଶ୍ୱାସ ସୃଷ୍ଟି କରିବଣି । ଆସନ୍ତୁ ଭାଗ୍ୟବାନ, ସତ୍ୟଗ୍ରାହୀ ଓ ସତଆତ୍ମା ରଖୁଥିବା ମୋର ପ୍ରିୟ ପାଠକ, ସେହି ମାଲିକକୁ ସାକ୍ଷୀରଖି ଆଉ ଖୋଲା ହୃଦୟରେ ସେହି ଭାବଗ୍ରାହୀକୁ ସ୍ମରଣ କରି ଥରେ ପଢିନିଅନ୍ତୁ -

ଅସ୍‌ହଦୁ-ଅଲ୍‌ଲାଇଲାହା ଇଲ୍‌ଲଲ୍‌ଲାହୁ ୱ ଅସହଦୁ - ଅନ୍‌ନା ମୁହମ୍‌ମଦନ ଅବ୍‌ଦୁହୁ ୱ ରସୁଲୁହୁ ସ୍ୱ.ଅ.ସ୍ୱଲମ -

ଅର୍ଥ-ମୁଁ ସାକ୍ଷ୍ୟ ଦେଉଛିକି (ଏ କଥାର) "ଅଲ୍ଲାଃଙ୍କ ବ୍ୟତୀତ କେହି ଉପାସନାର ଯୋଗ୍ୟ ନୁହେଁ", ସେ ଏକ ଅଭିନ୍ନ - ତା'ର କେହି ତୁଲ୍ୟ ନୁହେଁ । ଆଉ ସାକ୍ଷ୍ୟ ଦେଉଛିକି । ହଜ୍‌ରତ ମୁହମ୍ମଦ ସ୍ୱ.ଅ.ସ୍ୱ ଅଲ୍ଲାଃଙ୍କ ସଚ୍ଚା ରସୁଲ ଓ ଭକ୍ତ ଅଟନ୍ତି ।

ମୁଁ କ୍ଷମା ମାଗୁଛି ନାସ୍ତିକତାରୁ / ସିରକ୍‌ରୁ (କୌଣସି ପ୍ରକାର ଅଲ୍ଲାଙ୍କ ତୁଲ୍ୟ ଅନ୍ୟକୁ ବିଶ୍ୱାସ କରିବା) ସମସ୍ତ ପ୍ରକାର ଛୋଟବଡ ପାପରୁ, ମୁଁ ପଣ କରୁଛି ମୋର ଜନ୍ମ ଦାତା -. ପାଳନକର୍ତ୍ତା - ମୃତ୍ୟୁ ଦାତାଙ୍କର ସମସ୍ତ ଆଦେଶ ପାଳନ କରିବି । ଆଉ ମହାପୁରୁଷ ମହମ୍ମଦ ସ୍ୱ.ସ୍ୱ.ଙ୍କର ପଥ ଅନୁସରଣ କରିବି ।

କରୁଣାମୟ - ଦୟାବାନ-ପ୍ରଭୁ ମୋତେ ଓ ଆପଣଙ୍କୁ ମୃତ୍ୟୁ ପର୍ଯ୍ୟନ୍ତ ସତ ପଥରେ ପରିଚାଳିତ କରନ୍ତୁ ।

ମୋର ପ୍ରିୟ ପାଠକେ ! ଯଦି ଆପଣ ଆପଣଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଏହି ବିଶ୍ୱାସ ଓ ଇମାନର ଅନୁରୂପ ନିଜର ଜୀବନ ଚଳାଇ ନିଅନ୍ତି ତାହେଲେ ଜାଣିବେ ଏହି ଅକିଞ୍ଚନ ଆପଣଙ୍କର ଭ୍ରାତା ପ୍ରେମର ହକ୍/ ଅଧିକାର ପ୍ରଦାନ କରିପାରିଲା ।

॥ ଇମାନର ପରୀକ୍ଷା ॥

ଇସଲାମ ଓ ବିଶ୍ୱାସ ଯୋଗୁଁ ଆପଣଙ୍କର ପରୀକ୍ଷା ନିଆଯାଇପାରେ । କିନ୍ତୁ କିତାପଙ୍କ ସର୍ବଦା ସତ୍ୟର ହୋଇଥାଏ । ଏଠି ମଧ୍ୟ ସତ୍ୟର ଜୟହେବ । ଯଦି ସାରା ଜୀବନ ପରୀକ୍ଷା ଦେଇ ଆପଣଙ୍କୁ ଗତି କରିବାକୁ ପଡେ ତାହେଲେ ଏକଥା ଭାବି ଧୈର୍ଯ୍ୟ ଧରିବେ - ସହ୍ୟ କରିବେ । କାରଣ ପାର୍ଥିବ ଜୀବନ ଅଳ୍ପ ଦିନର ! ଏ ମୃତ୍ୟୁ ପରେ ପରପାରି ଜୀବନ, ସେଠାକାର ସ୍ୱର୍ଗ ଆଉ ସେଠାକାର ସୁଖ ପ୍ରାପ୍ତି ପାଇଁ ନିଜର ପ୍ରଭୁଙ୍କୁ ସନ୍ତୁଷ୍ଟ କରିବା । ତା'ର ଦର୍ଶନ ଲଭିବା ତୁଳନାରେ ଏହି ପରୀକ୍ଷା କିଛି ମାନେ ରଖେନାହିଁ ।

॥ ଆପଣଙ୍କର କର୍ତ୍ତବ୍ୟ ॥

ଆଉ ଗୋଟିଏ କଥା, ଇମାନ / ବିଶ୍ୱାସ ଓ ଇସଲାମ ର ସତ୍ୟ ବାର୍ତ୍ତା ପ୍ରତ୍ୟେକଙ୍କର ଅଧିକାର ଆମ ଉପରେ ହେଉଛି ଯାହାଙ୍କ ପର୍ଯ୍ୟନ୍ତ





ଏ ବାର୍ତ୍ତା ପହଞ୍ଚୁନାହିଁ । ଏଣୁ ଆପଣଙ୍କର ମଧ୍ୟ କର୍ତ୍ତବ୍ୟ ହେଲା ନିଃସ୍ୱାର୍ଥ ଭାବରେ କେବଳ ଆପଣଙ୍କର ଭାଇଙ୍କ ପ୍ରତି ସଦୟ ହୋଇ ତାଙ୍କୁ ପ୍ରଭୁ କୋପରୁ ଓ ନର୍କ ଯନ୍ତ୍ରଣାରୁ ମୁକ୍ତି ଦେବା ପାଇଁ, ଦୁଃଖ କଷ୍ଟ ଯନ୍ତ୍ରଣା ସହି ପ୍ରିୟ ନବି ମହମ୍ମଦ ସ୍ୱ.ସ୍ୱ. ଯେପରି ସତ୍ୟକୁ ପହଞ୍ଚାଇ ଥିଲେ, ଆପଣ ମଧ୍ୟ ପହଞ୍ଚାନ୍ତୁ, ତାଙ୍କୁ ସଠିକ୍-ସତ୍‌ମାର୍ଗ ସଂପର୍କରେ ଜଣାଇବା ପାଇଁ ପ୍ରଭୁଙ୍କ ଠାରେ କରୁଣା ଭିକ୍ଷା କରନ୍ତୁ । କିଏ ସେ ନିର୍ଦ୍ଦୟ ବ୍ୟକ୍ତି ହେବ ଯିଏ ଦେଖୁଛି ଜଣେ ଅନ୍ଧ ବ୍ୟକ୍ତି - ଅଜାଣତରେ ଜ୍ୱଳନ୍ତ ନିଆଁ ଗଦା ଆଡକୁ ଆଗେଇ ଚାଲିଛି ତାକୁ ହାତ ଧରି ବଂଚାଇ ନନେବ ! ବରଂ ସେ ନେହୁରା ହୋଇ ଅନ୍ଧ ଲୋକଟିକୁ ହାତ ଧରି ଠିକ୍ ବାଟ ଦେଖାଇ ଦେବ ।

ଇମାନ / ଆଣିବା ପରେ (ବିଶ୍ୱାସୀ ହେବା ପରେ) ଜଣେ ମୁସଲମାନର ପରମ ଧର୍ମ ହେଉଛି ମଣିଷକୁ କୁଫର୍ -ନାସ୍ତିକତାର ଅଗ୍ନିକୁଣ୍ଡରୁ ରକ୍ଷା କରିବା ପାଇଁ ପାଗଳ ପ୍ରାୟ ହାତ ଗୋଡ ଧରି ନେହୁରା ହୋଇ; ଲୋକଙ୍କୁ ଭୁଲବାଟରେ ଯିବାକୁ ନଦେଇ; ମଣିଷ ପାଇଁ ପ୍ରକୃତରେ ସଦୟ ହୋଇ; କାର୍ଯ୍ୟ କଲେ ନିଶ୍ଚୟ ସୁଫଳ ମିଳିବ । ଯଦି ଆପଣଙ୍କ ସଦିଚ୍ଛା ଓ ଚେଷ୍ଟା ଯୋଗୁଁ କେହି ଜଣେ ଇମାନରେ ଆସିଗଲା ତେବେ ଆପଣଙ୍କର ମୁକ୍ତିର ପଥ ସୁଗମ ହୋଇଗଲା । ଅଲ୍ଲାଃ ସେହି ଲୋକଟି ପ୍ରତି ପ୍ରସନ୍ନତା ପ୍ରକାଶ କରନ୍ତି ଯିଏ ଏ କାର୍ଯ୍ୟ କରେ । ଯଦି ଆପଣଙ୍କର ପୁଅ ଅବଜ୍ଞାକାରୀ ହୋଇ ଆପଣଙ୍କ ଶତ୍ରୁ ଠାରେ ସରଣ ପଶେ ଆଉ କେହି ଜଣେ ଭଦ୍ର ବ୍ୟକ୍ତି ତାକୁ ପ୍ରକୃତ କଥା ବୁଝାଇ ଆଣି ଆପଣଙ୍କ ହାତଧରାଇ ଦିଏ ତେବେ ଆପଣ କେତେ ପ୍ରସନ୍ନ ନ ହେବେ । ପ୍ରଭୁ ଏହାଠାରୁ ଅଧିକ ପ୍ରସନ୍ନ ହୁଅନ୍ତି ଯିଏ ଅସତ୍ୟରୁ କାଢି ସତ୍ ପଥରେ ମଣିଷକୁ ପକାଇଦିଏ ଓ ଅନ୍ୟ ପାଇଁ ଇମାନ ପହଞ୍ଚାଇବାର ମାଧ୍ୟମ ହୁଏ ।

॥ ଇମାନ ଗ୍ରହଣ କରିବା ପରେ ॥

ଇସଲାମ ର ଶାନ୍ତି ପତାକା ତଳେ ସରଣ ନେଲାପରେ ଯଦି ଆପଣ ପ୍ରଭୁର ସଚ୍ଚା ଭକ୍ତ ହୋଇଗଲେ ତେବେ ଆପଣଙ୍କୁ ପ୍ରତିଦିନ ପଞ୍ଚ ସଂଧ୍ୟା (ନମାଜ) କରିବାକୁ ହେବ । ଆପଣ ନମାଜ (ପ୍ରାର୍ଥନା) ଶିଖନ୍ତୁ ଓ ପଢନ୍ତୁ । ଆପଣଙ୍କୁ ଆତ୍ମାର ଶାନ୍ତି ମିଳିବ । ଆଉ ପ୍ରଭୁ ପ୍ରେମ ପ୍ରାପ୍ତ ହେବେ । 'ରମଜାନ' ମାସ ଆସିଲେ ମାସେ କାଳ ନିର୍ଜଳ ରୋଜା / ଓଷା ରଖିବେ । ବିତ୍ତଶାଳୀ ଅଟନ୍ତି ତ ଜୀବନରେ ଥରେ ମକ୍କା ହଜ୍ ଯାତ୍ରାରେ ଯିବାକୁ ହେବ ।

ସାବଧାନ ଆପଣଙ୍କର ବହୁମୂଲ୍ୟ ମସ୍ତକ କେବଳ ଅଲ୍ଲାଃଙ୍କ ପାଇଁ । ଏହା ବ୍ୟତୀତ ଆଉ କାହାରି ନିକଟରେ ଯେପରି ନ ନଇଁଯାଏ । ସରାବ/ସୁରା, ଜୁଆ, ସୁଧକାରବାର, ଘୁଷୁରୀ ମାଂସ, ଲାଞ୍ଚ, ମିଛ ହରାମ ହୋଇଗଲା । ସବୁ ହରାମ କାର୍ଯ୍ୟରୁ ବଞ୍ଚିବାକୁ ହେବ । ଅଲ୍ଲାଃ ଆଡୁ ପ୍ରେରିତ ପବିତ୍ର ଗ୍ରନ୍ଥ କୁର୍‌ଆନ ପ୍ରତିଦିନ ପଢିବାକୁ ହେବ । ଶିଖିବାକୁ ହେବ । ଆଉ ପ୍ରଭୁଙ୍କ ଠାରେ ମାଗୁଣୀ କରିବାକୁ ହେବ ଯେ ନିଜେ, ନିଜ ପରିବାର, ବନ୍ଧୁ ସହୋଦର ଓ ଭୂମଣ୍ଡଳରେ ବସବାସ କରୁଥିବା ମଣିଷ ସମାଜ କିପରି ସତ୍‌ମାର୍ଗ ଦର୍ଶନ କରି ଶାନ୍ତି ଲାଭକରୁ । କାରଣ ଇମାନ (ପ୍ରକୃତ ବିଶ୍ୱାସ) ହିଁ କେବଳ ମଣିଷକୁ ଶାନ୍ତି ଦେଇପାରେ ଇହକାଳ ଓ ପରକାଳରେ । ଯେପରି ମହାପୁରୁଷ ଇବ୍ରାହିମ୍ (ଆବ୍ରାହମ୍) ନିଆଁ ଉପରକୁ ଲମ୍ଫ ପ୍ରଦାନ କରିଥିଲେ ଆଉ ନିଆଁ ଫୁଲଗଦାରେ ପରିଣତ ହୋଇଥିଲା । ସେହିପରି ଆଜିବି ଇମାନର ଶକ୍ତି ନିଆଁକୁ ଫୁଲରେ ପରିଣତ କରିପାରେ । ଆଉ ସତ୍ୟମାର୍ଗର ପ୍ରତ୍ୟେକ ପ୍ରତିବନ୍ଧକକୁ ଶେଷ କରିପାରେ ।

*– ହୋ ଇମାନ ଇବ୍ରାହିମ୍ ଜା ଉତ୍ପନ୍ନ ଆଜ*
*ପୁଷ୍ପକେ ସ୍ୱଭାବ ସେ ହୋ ଆଗଭି ସଂପନ୍ନ ଆଜ ॥*

*– ହୁଏ ଯଦି ଇମାନ ଇବ୍ରାହିମ ପରି ଆଜି*
*ଅଗ୍ନି ପାଲଟିବ ପୁଷ୍ପ ସହଜରେ ଭାଇ ॥*